# ଆମ ଭାବ-ଆଦାନ ପ୍ରଦାନ ଶତାବ୍ଦି

ଟେଲିଭିଜନ ଦେଖୁଥିବା ବେଳେ, ତମକୁ ଲାଗେ ଯେମିତି ପୂରା ପରଦାଟା ଆଲୋକିତ ପ୍ରକାଶମାନ ଅଛି। ହେଲେ ଏଇଟା କେବଳ ଭ୍ରମ। ପ୍ରକୃତରେ, ପରଦାଟିରେ ହଜାର ହଜାର ଛୋଟ ବିନ୍ଦୁ ଥାଏ, ୫୨୫ଟି ଧାଡ଼ିରେ। ଏହି ବିନ୍ଦୁଗୁଡ଼ିକ ଗୋଟିଏ ପରେ ଗୋଟିଏ ଜଳିଉଠନ୍ତି, ପୁଣି ବାମରୁ ଡାହାଣକୁ, ଉପରୁ ତଳକୁ ଗତି କରନ୍ତି। ଏହି ପ୍ରକ୍ରିୟାକୁ ସ୍କାନିଂ କୁହାଯାଏ। ସମ୍ପୂର୍ଣ୍ଣ ପରଦାଟି ପ୍ରତି ସେକେଣ୍ଡରେ ୩୦ ଥର ସୂକ୍ଷ୍ମଭାବେ ପରୀକ୍ଷିତ (scan) ହୁଏ! ଏହାର କ୍ଷିପ୍ରତା ଯୋଗୁ ଜଣାପଡ଼େ ଯେ ସେସବୁ ବିନ୍ଦୁଗୁଡ଼ିକ ଏକକାଳୀନ ପ୍ରକାଶିତ ହେଉଛନ୍ତି। ପ୍ରତ୍ୟେକ ଜଳନ୍ତା ବିନ୍ଦୁର ଭିନ୍ନ ଭିନ୍ନ ଆଲୋକ ବା ପ୍ରକାଶିତ ଛଟା ହିଁ ତମେ ଦେଖିପାରୁଥିବା ଦୃଶ୍ୟ ବା ଆକୃତି ନିରୂପଣ କରେ।

ଯଦି ତମେ ଏହି ପ୍ରକ୍ରିୟାକୁ କ୍ଷଣକ ପାଇଁ ସ୍ଥିର କରିପାରିବ, ତେବେ ଦେଖାଯିବ — କେବଳ ଗୋଟିଏ ପ୍ରକାଶିତ ବିନ୍ଦୁ — ଆଉ ସବୁଆଡ଼ ଅନ୍ଧକାର!

ଦୂରର ପ୍ରସାରିତ ବେତାର ପ୍ରସାରଣ (radio broadcasting) ସମ୍ଭବ ହୋଇପାରିଛି ଆୟନୋସ୍ଫିଅର ଯୋଗେ। ଉପରେ ବେଶ ଉଚ୍ଚ ଉଚ୍ଚ ହୋଇ ଥିବା ବିଦ୍ୟୁତ୍ଯୁକ୍ତ ବାୟୁ, ପୃଥିବୀ ପୃଷ୍ଠରୁ ୫୦ରୁ ୪୦୦ କି.ମି. ଉଚ୍ଚତା ପର୍ଯ୍ୟନ୍ତ। ଉପରକୁ ପଠାଯାଇଥିବା ବେତାର ତରଙ୍ଗ ପରାବର୍ତ୍ତିତ ହୋଇ ପୁଣି ଫେରିଆସେ ପୃଥିବୀ ପୃଷ୍ଠକୁ। ପ୍ରସାରଣ କେନ୍ଦ୍ରସବୁ ଏହି ପ୍ରକ୍ରିୟା ବ୍ୟବହାର କରି, ସରଳ-ଧାରପ୍ରେରଣ-ରେଖାରେ ନ ଥିବା ସ୍ଥାନଗୁଡ଼ିକୁ ପହଞ୍ଚିପାରନ୍ତି।

Ionosphere

Transmitter

ରେଡ଼ିଓ ତରଙ୍ଗସବୁ କୋଣେଇ କରି ପଠାଯାଏ, ଫଳରେ ତାହା ରେଡ଼ିଓ ଓ ବେତାର କେନ୍ଦ୍ରଠାରୁ ଅନେକ ଦୂରରେ ପହଞ୍ଚିପାରେ।

ଟେଲିଫୋନ ଯୋଗେ ତମେ ସୁଦୂରସ୍ଥିତ ବନ୍ଧୁ ସହିତ କଥାବାର୍ତ୍ତା କରିପାର। ଏବେ ଭିଡିଓ-ଟେଲିଫୋନ ସହାୟତାରେ, ଆଳାପରତ ଉଭୟ ବନ୍ଧୁ ପରସ୍ପରକୁ ଦେଖିପାରିବେ। ଉଭୟ ଟେଲିଫୋନରେ ସଂଲଗ୍ନ ଭିଡିଓ କ୍ୟାମେରା, କଥାବାର୍ତ୍ତାରତ ବନ୍ଧୁ'ର ଛବି ଅପରର ଭିଡିଓ ପରଦାରେ ଦେଖାଏ। ଦେଖିଲ ତ, ସେ ଦିନ ଦୂର ନାହିଁ, ଯେତେବେଳେ ଦୌଡ଼ ନ ଲାଗି ମଧ୍ୟ ତମେ ଯାହାକୁ ଚାହିଁବ ତାକୁ ଦେଖିବା ସମ୍ଭବ ହୋଇପାରିବ!

ଏପ୍ରିଲ (୧୦,୧୯୮୨) ମାସରେ ଭାରତ ଇନ୍‌ସାଟ୍ 1ଏ ଛାଡ଼ିଥିଲା। ଏହି ଉପଗ୍ରହ ଅନେକାନେକ ମୁଖ୍ୟ କେନ୍ଦ୍ରମାନଙ୍କର ଟେଲିଭିଜନ ଓ ଟିଭି କାର୍ଯ୍ୟକ୍ରମ ସଂପୃକ୍ତ କରି ସେ ସବୁକୁ ଦେଶ'ର ଦୂରର ଅଞ୍ଚଳରେ ସ୍ଥିତ ଛୋଟ ଛୋଟ ଗାଁ ଗହଳକୁ ପଠେଇ ପାରିଲା। ଏହିପରି ଭାବେ, ସହରୀ ବାବୁମାନେ ଦେଖୁଥିବା କାର୍ଯ୍ୟକ୍ରମ ଗାଁଲୋକେ ମଧ୍ୟ ଉପଭୋଗ କରିପାରନ୍ତି। ଚଳିତ ବର୍ଷ ଅଗଷ୍ଟରେ ଭାରତ ଇନ୍‌ସାଟ୍ 1ବି ଉପଗ୍ରହ ପଠେଇଛି। ଏହି ଉପଗ୍ରହ ସାହାଯ୍ୟରେ ଭାରତରୁ ଦେଶବିଦେଶ ସହିତ ଅତି ଶୀଘ୍ର ଟେଲିଫୋନ ସମ୍ପର୍କ କରାଯାଇ ପାରିବ।

[redacted]

ସବୁଠାରୁ ଅଧିକ ଲୋକପ୍ରିୟ ପାଠ୍ୟକ୍ରମ ଯେଉଁଥିରୁ ଏ ପର୍ଯ୍ୟନ୍ତ ୨୦ ଲକ୍ଷରୁ ଅଧିକ ପାଠକ ଉପକୃତ ହେଲେଣି

ଅନାୟାସ ସହଜସାଧ୍ୟ

## ଇଂରାଜୀ କଥାବାର୍ତ୍ତା ଶିଖିବା ଲାଗି ସହଜ ଓ ସରଳ ପ୍ରଣାଳୀ

# ରେପିଡେକ୍ସ ଇଂଲିଶ ସ୍ପିକିଂ କୋର୍ସ®




ଏବେ ଓଡ଼ିଆ ଭାଷାରେ ମିଳୁଛି

ବଡ଼ ସାଇଜର 384 ପୃଷ୍ଠା

ପ୍ଲାଷ୍ଟିକ ଲାମିନେଟେଡ୍ ବହୁ ରଙ୍ଗୀ ମଲାଟ

ମୂଲ୍ୟ 24/- ଟଙ୍କା
ଡାକ ଖର୍ଚ୍ଚ 4/- ଟଙ୍କା

## ରେପିଡେକ୍ସ ପାଠ୍ୟକ୍ରମର ବିଶେଷତ୍ୱ—

- ଏଥିରେ ନିର୍ଭୁଲ ଉଚ୍ଚାରଣ ପାଇଁ ପୁରା ପାଠ୍ୟକ୍ରମରେ ଇଂରାଜୀ ବାକ୍ୟ ଓ ଶବ୍ଦ ଗୁଡ଼ିକୁ ଓଡ଼ିଆ ଅକ୍ଷରରେ ଦିଆଯାଇଛି ।
- ପ୍ରାୟ ୨୫୦୦ ବଚ୍ଛା ବଚ୍ଛା ଇଂରାଜୀ ଶବ୍ଦ ଓ ପ୍ରାୟ ୨୭୦୦ ସାଧାରଣ କଥାବାର୍ତ୍ତା (କଥୋପକଥନ) ଲାଗି ଉପଯୋଗୀ ଛୋଟ ଛୋଟ ବାକ୍ୟ ଦିଆଯାଇଛି; ଯାହା କି :
  - ଘରେ ବା ଦପ୍ତରରେ, କଲେଜ ବା ସ୍କୁଲରେ, ଭୋଜୀ ବା ସଭା ସମିତିରେ...
  - ପ୍ରେମିକ-ପ୍ରେମିକା, ପତି-ପତ୍ନୀ, ଅଫସର-କର୍ମଚାରୀ, ବ୍ୟବସାୟୀ-ଗରାଖୀ, ଛୋଟ-ବଡ଼ ସବୁ ଶ୍ରେଣୀର ଲୋକେ...
  - ପ୍ରେମାଳାପ, ଶିଷ୍ଟାଚାର, ଅଭିବାଦନ, ସମ୍ବର୍ଦ୍ଧନା, ନିମନ୍ତ୍ରଣ, ପ୍ରଶଂସା ଅଥବା ସାନ୍ତ୍ୱନା...
  - ମନୋରଞ୍ଜନ, ସ୍ୱାସ୍ଥ୍ୟ, ଖାଦ୍ୟପେୟ, ବେଶଭୂଷା ତଥା ସାମାଜିକ ଓ ରାଜନୈତିକ ପ୍ରସଙ୍ଗରେ...
  - ଟେଲିଫୋନରେ, ସଭାସମିତିରେ ବା କୌଣସି ବିଶେଷ ଅବକାଶରେ ଅଥବା କୌଣସି ଏକ ବିଷୟରେ ବିସ୍ତୃତ ବିବରଣୀ ସହିତ...
  - କୌଣସି ଶ୍ରେଣୀର ପୁରୁଷ ବା ମହିଳାମାନଙ୍କ ସାଙ୍ଗରେ ସ୍ୱଚ୍ଛନ୍ଦତାର ସହିତ କଥାବାର୍ତ୍ତା ସମୟରେ କୁହାଯାଇ ଥାଏ ।
- ପଢ଼ୁ ପଢ଼ୁ ଶିଖିବା ଓ ବୁଝିବା ଲାଗି ଏକ ସହଜ, ସୁଗମ ଓ ନୂତନ ପ୍ରଣାଳୀ...ଯେପରି ଛୋଟ ପିଲାଟିଏ ଲେଖି ପଢ଼ି ନ ଜାଣି ବି ଶୁଣିଶୁଣି କଥା କହିବା ଭଳି ଶିଖିଥାଏ ।
- ପୁରା ପାଠ୍ୟକ୍ରମରେ କଥାବାର୍ତ୍ତାର ଢଙ୍ଗ ଯେପରି ମୁହାଁମୁହିଁ କଥୋପକଥନ ଭଳି ।

### ମୂଲ୍ୟ ଫେରସ୍ତ ଦିଆଯିବ

ଆପଣ ରେପିଡେକସ କୋର୍ସ ପଢ଼ି ସନ୍ତୁଷ୍ଟ ନ ହେଲେ ପରେ ବହିଟି ଫେରନ୍ତା ଡାକରେ ପଠାଇ ଦେଲେ, ଡାକଖର୍ଚ୍ଚ କଟାଯାଇ ଅବଶିଷ୍ଟ ପୁରା ଦାମ ଫେରସ୍ତ ଦିଆଯିବ ।

## ଏପରି ଯୁବକ ଯୁବତୀ....

### ପୁରୁଷ ସ୍ତ୍ରୀ ଲୋକଙ୍କ ପାଇଁ ଏହା ଉଦ୍ଦିଷ୍ଟ ଯେଉଁମାନେ—

- ଗ୍ରାଜୁଏଟ୍ ହୋଇ ମଧ୍ୟ ଇଂରାଜୀ କହିବାକୁ ସାହସ ପାଆନ୍ତି ନାହିଁ ।
- ଇଣ୍ଟରଭିଉରେ ବିଫଳ ହୁଅନ୍ତି ଓ ଭଲ ଚାକିରୀ ପାଆନ୍ତି ନାହିଁ ।
- କଲେଜ ଛାତ୍ର ସଂସଦ ବା କ୍ଲବରେ ଆଧୁନିକ ଶୈଳିଚଳନର ପିଲାଙ୍କ ସହିତ ମିଳାମିଶା କରି ପାରନ୍ତି ନାହିଁ ।
- ଶିକ୍ଷିତା ଗୃହିଣୀ ହୋଇ ବି ପଡ଼ୋଶୀ, କୁଣିଆ ଓ ଅନ୍ୟ ଆଧୁନିକ ପରିବାରର ଲୋକଙ୍କ ସହିତ ଖୋଲା ଢଙ୍ଗରେ କଥାବାର୍ତ୍ତା କରି ମିଳିମିଶି ଚଳି ପାରନ୍ତି ନାହିଁ ଅଥବା ଇଂରାଜୀ ମାଧ୍ୟମ ବିଦ୍ୟାଳୟରେ ପଢ଼ୁଥିବା ନିଜର ପିଲାମାନଙ୍କୁ ପାଠପଢ଼ାରେ ସାହାଯ୍ୟ କରି ପାରନ୍ତି ନାହିଁ କି ସେମାନଙ୍କୁ ଯୋଗ୍ୟ କରି ପାରନ୍ତି ନାହିଁ ।
- ବ୍ୟବସାୟୀ ବା ଦୋକାନୀ ହୋଇ କୌଣସି ଅଫିସରଙ୍କ ସହିତ ନିର୍ଭୟରେ କଥାଭାଷା କରି ପାରନ୍ତି ନାହିଁ; ଶିକ୍ଷିତ କର୍ମଚାରୀ ନିଯୁକ୍ତ କରି ସେମାନଙ୍କଠାରୁ ଯଥାରୀତି କାମ ହାସଲ କରି ପାରନ୍ତି ନାହିଁ । ମୋଟାମୋଟି କହିବାକୁ ଗଲେ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଯେଉଁମାନେ ପଛେଇ ଯାଆନ୍ତି ।

VANDANA/PM/ Or-1

ରେପିଡେକସ କୋର୍ସ ପ୍ରତ୍ୟେକ ପୁସ୍ତକ ବିକ୍ରେତା, ରେଳ ଷ୍ଟେସନ, ବସ ଷ୍ଟାଣ୍ଡ ଓ ବିମାନ ଘାଟିରେ ପ୍ରତିଷ୍ଠିତ ବୁକ୍ ଷ୍ଟଲରେ ମଧ୍ୟ କିଣିବାକୁ ମିଳୁଛି । ପୁସ୍ତକ ଭି.ପି.ପି. ଦ୍ୱାରା ମଗାଇବା ଠିକଣା—



**PUSTAK MAHAL** (CM) KHARI BAOLI, DELHI-110006



# ଚନ୍ଦ୍ରମାମୁଁ କ୍ୟାମେଲ

## ରଙ୍ଗ ପ୍ରତିଯୋଗୀତା

**ପୁରସ୍କାର ଦାତାନ୍ତୁ**
**କ୍ୟାମେଲ**
ପ୍ରଥମ ପୁରସ୍କାର ଟ. ୧୫/-
୩ ଦ୍ୱିତୀୟ ପୁରସ୍କାର ଟ. ୧୦/-
୧୦ ତୃତୀୟ ପୁରସ୍କାର ଟ. ୫/-
୧୦ ସାର୍ଟିଫିକେଟ

କୁପନ୍ ଦର୍ଶାଯାଇଥିବା ଗାର ପାଖ ଦେଇ କାଟନ୍ତୁ ।

ଏହି ପ୍ରତିଯୋଗିତାରେ ୧୨ ବର୍ଷ ପର୍ଯ୍ୟନ୍ତ ବୟସର ପିଲାମାନେ ଭାଗନେଇ ପାରିବେ । କ୍ୟାମେଲ ରଙ୍ଗ ଦ୍ୱାରା ଉପରେ ଦର୍ଶାଯାଇଥିବା ଚିତ୍ରଟିକୁ ସଂପୂର୍ଣ୍ଣରୂପେ ରଙ୍ଗ କରନ୍ତୁ ଓ ନିମ୍ନରେ ଦିଆଯାଇଥିବା ଠିକଣାକୁ ପଠେଇ ଦିଅନ୍ତୁ—ପୋ. ବକ୍ସ ନଂ. ୯୯୨୮, କୋଲାବା, ବମ୍ବେ-୪୦୦ ୦୦୫ ।
ବିଚାରକମଣ୍ଡଳୀଙ୍କ ନିଷ୍ପତ୍ତି ଚୂଡାନ୍ତ ଓ ବାଧ୍ୟତାମୂଳକ ହେବ । ଏ ସଂପର୍କରେ କୌଣସି ଚିଠିପତ୍ରକୁ ପ୍ରଶ୍ରୟ ଦିଆଯିବ ନାହିଁ । ଅନୁଗ୍ରହ କରି କୁପନକୁ କେବଳ ଇଂରାଜୀରେ ପୂରଣ କରନ୍ତୁ ।

Name:........................................................................ Age:....................

Address:..............................................................................................

..............................................................................................................

ପୂର୍ବରୁ ପଠାନ୍ତୁ: 30—11—1983 **CONTEST NO 33**



**Results of Chandamama Camlin Colouring Contest No.31 (Oriya)**

*1st Prize:* Bhabesh Ku. Acharya, Dhenkanal. *2nd Prize:* Kumari Arnapurna, Bhubaneswar. Kunja Bihari Bala, Sunhat, Bhaktabachall Sahoo, Kujang. Sri Jayanta Ku. Parida, Nalipur. Sri Lokanatha Paik,

# ଜିଣିବାର ସ୍ୱାଦ ଜାଣନ୍ତି ଏମାନେ!

## ଜହ୍ନମାମୁଁ

### ତମର ପରମ୍ପରା ଜାଣ

# ପ୍ରତିଯୋଗିତା

'ତମର ପରମ୍ପରା ଜାଣ' ପ୍ରତିଯୋଗିତା'ର ଫଳାଫଳ ଘୋଷଣା କରିବାରେ ଆମେ ଆନନ୍ଦିତ । ସତରେ, ଜିଣିଥିବା ଉତ୍ତରଗୁଡ଼ିକ ଅତି ବଢ଼ିଆ ଥିଲା । ବିଜୟୀ ଓ ବିଜୟିନୀ ବୃନ୍ଦ—ବଧାଇ ସ୍ୱୀକାର !

## ଭବ୍ୟ ପ୍ରଥମ ପୁରସ୍କାର ବିଜେତା:

## ଅନୁପମ ଫୁକନ

ଉଷାପୁର ମରାନହାଟ, ପୋଷ୍ଟ: ମରାନହାଟ, ଆସାମ-୭୮୫୬୭୦ ।

**ସିଏ ରମଣୀୟ-ଭାରତ-ଭ୍ରମଣରେ ଯିବେ ଏବଂ ତାଙ୍କର ସମସ୍ତ ବ୍ୟୟଭାର ଆମେ ବହନ କରିବୁ ।**

ତବ ଶୁଭ-ଯାତ୍ରା ଚାହୁଁଛୁ ହେ ବିଜୟୀ ବୀର !

ଓଡ଼ିଆରେ ଦ୍ୱିତୀୟ ପୁରସ୍କାର ଜିଣିଛନ୍ତି (୧) ଶ୍ରୀମତୀ ନର୍ମଦା ମିଶ୍ର, ତଳପଦା (୨) ମଳୟ କୁମାର ପଣ୍ଡା, ନୂଆପଡ଼ା (୩) ଦୀପ୍ତିଶ୍ରୀ ମିଶ୍ର, ଢେଙ୍କାନାଳ (୪) ଗଙ୍ଗାଧର ନନ୍ଦ, କଟକ (୫) ସୁକାନ୍ତ ଦାଶ, ଭୁବନେଶ୍ୱର (୬) ସ୍ମିତାରାଣୀ ସାଁନ୍ତରାପାତ୍ର, ଜୋବରା (୭) ବାବୁଲାଲ ରଥ, କେସିଙ୍ଗା (୮) ପ୍ରଭାବତୀ ସାହୁ, ଜଗନ୍ନାଥପୁର (୯) ଆଶିଷ ରଞ୍ଜନ ଷଡ଼ଙ୍ଗୀ, ଭୁବନେଶ୍ୱର (୧୦) ଇତା ଦାସ, ଗଡବସ୍ତା ।

ଅନ୍ୟ ୨୭୦୦ ଜଣ ବିଜେତା ତୃତୀୟ, ସାନ୍ତ୍ୱନାପ୍ରଦ ଓ ଷ୍ଟକ୍ ପ୍ରାଇଜ ଜିଣିଛନ୍ତି । ଯଦି ତମେ ଜିଣିଥାଅ, ତେବେ ତମେ ଆମଠାରୁ ଡାକରେ ଖବର ପାଇବ । ତାଦ୍ୱାରା, ଆମେ ଦେଉଥିବା ବିଭିନ୍ନ ପୁରସ୍କାର ଭିତରୁ ତମେ ମନପସନ୍ଦର ପୁରସ୍କାରଟିଏ ବାଛିପାରିବ ।

ଏହି ପ୍ରତିଯୋଗିତାଟି ଅତ୍ୟନ୍ତ ସଫଳ ରହିଲା ଏବଂ ତମେ ଅଂଶନେଇଥିବା ହେତୁ ଆମର ଅଶେଷ ଧନ୍ୟବାଦ ଗ୍ରହଣ କର । ଆଉ ତମମାନଙ୍କ ଭିତରୁ ଯେଉଁମାନେ ଏଥରକ ଜିଣିପାରିନାହାଁନ୍ତି, ମନ ଖରାପ କରନା ... ସୁଯୋଗ ପୁଣି ଥରେ ଆସିବ !

ଧୁମାଧୁମ ବଲ ଖେଳର ଧୁମ
ଆଜି ଛୁଟିର ଦିନ
ଖାଇବା ପାଇଁ ଜେମ୍ସ ମଜାଦାର
ଆମ ମନ ଛନଛନ !








**ଜେମ୍ସ ସବୁରି ପ୍ରିୟ-**
**ତା ପାଇଁ ଅଛି ସମୟ ହିଁ ସମୟ !**

କ୍ୟାଡବରିଜ

# ଜହ୍ନମାମୁଁ

ସମ୍ପାଦକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍‌ଡୀ

---

ପବିତ୍ର ଦୀପାବଳି ସମସ୍ତଙ୍କ ପାଇଁ ଆନନ୍ଦମୁଖର ହେଉ । ଆନନ୍ଦର ଆଲୋକରେ ସବୁ ପ୍ରାଣ ହେଉ ଉଦ୍‌ଭାସିତ ।

ଏ ସଂଖ୍ୟା ଏକ ବିଶେଷାଙ୍କ । ଅଧିକ କାହାଣୀରେ ସମୃଦ୍ଧ । ଆଶା, ଏହା ଉତ୍ସବ ଉପଭୋଗରେ ସହାୟକ ହେବ ।

## ଅମରବାଣୀ

ଅତୀତ୍ୟ ସ୍ୱାର୍ହତାଂ କୋପି, ଲଭତେ ନାଧିକମ୍ ଫଲଂ ।
ସ୍ୱଳ୍ପ ମେବାଂବୁ ଲଭତେ, ପ୍ରସ୍ଥଃ ପ୍ରାପ୍ୟାପି ସାଗରଂ ॥

[କେହି ନିଜ ଯୋଗ୍ୟତାଠୁଁ ଅଧିକ ଫଳ ପାଇ ପାରେନା । ଲୋଟାକୁ ଯଦି ମହାସାଗରକୁ ନେଇଯିବ, ତେବେ ବି ଲୋଟାରେ ଯେତିକି ପାଣି ଧରିବା କଥା ସେତିକି ଧରିବ । ତାହାଠୁଁ ଅଧିକ ନୁହେଁ ।]

---

ବର୍ଷ : ୧୭ ନଭେମ୍ବର ୧୯୮୩ ଅଙ୍କ : ୫

ପ୍ରତିସଂଖ୍ୟା : ଟ. ୨ ୫୦ :: ବାର୍ଷିକ ମୂଲ୍ୟ : ଟ. ୨୪-୦୦



## ଜହ୍ନମାମୁଁ ସମ୍ବାଦ




### ଜୀବଜନ୍ତୁ-ଧ୍ୱନି-ଯାଦୁଘର

ମସ୍କୋ ବିଶ୍ୱବିଦ୍ୟାଳୟର ପ୍ରାଣୀତତ୍ତ୍ୱ ବିଭାଗ ପ୍ରାୟ ତିନି ହଜାର ଗୋଟି ବଡ଼ ପ୍ରାଣୀଙ୍କ କଣ୍ଠସ୍ୱର ରେକର୍ଡ କରିଛନ୍ତି । ମାଛ ଓ ପିମ୍ପୁଡ଼ି ମଧ୍ୟ ତା'ର ଅନ୍ତର୍ଭୁକ୍ତ !

ବିଶେଷଜ୍ଞମାନେ କହନ୍ତି, ପଶୁପକ୍ଷୀଙ୍କ ଧ୍ୱନି ମଣିଷର ଉପକାର କରେ । ନିଦ୍ରାହୀନତାରେ କଷ୍ଟ ପାଉଥିବା ଲୋକ ନିଦ୍ରାମଗ୍ନ ହୁଏ । ଯନ୍ତ୍ର ଧ୍ୱନି କିନ୍ତୁ ବିପରୀତ ଫଳ ଦିଏ !

### ସୂର୍ଯ୍ୟର ହଜମଶକ୍ତି !



ଗବେଷଣାରୁ ଜଣାଯାଏ, ପ୍ରତି ସେକେଣ୍ଡରେ ସୂର୍ଯ୍ୟ ନିଜ କଳେବରରୁ ପ୍ରାୟ ବିୟାଳିଶ ଲକ୍ଷ ଟନ୍ ସାମଗ୍ରୀ ଖାଇ ପକାଉଛି ! ତେବେ କ'ଣ ସେ ନିଜକୁ ଖାଇ ଶେଷ କରିଦେବ ? ଭୟ ନାହିଁ । ଆଗାମୀ ଛଅଲକ୍ଷ କୋଟି ବର୍ଷ ଶେଷକୁ ସେ ନିଜ କଳେବରର ଚୃଳିଶ ହଜାର ଭାଗରୁ ଏକଭାଗ ମାତ୍ର ଭକ୍ଷଣ କରିଥିବ ।

### ଏକ ଶିଶୁର ଜନ୍ମ




ଏଇଟା ପୁଣି ଖବର ? ପୁଣି ଏ ଶିଶୁ କୌଣସି ରାଜପୁତ୍ର ରାଜକନ୍ୟା ବି ନୁହେଁ । କଥା ହେଲା, ଏହା ଆଣ୍ଡାମାନର ଓଙ୍ଗ୍ ଜାତିରେ ଜନ୍ମିତ । ଏ ପ୍ରାଗୈତିହାସିକ ଜାତିର ଲୋକ ସଂଖ୍ୟା ମାତ୍ର ୯୭ । ବର୍ତ୍ତମାନ ଗୋଟିଏ ବଢ଼ିଲା । ଏମାନେ ମହୁଫେଣା ଭଳି ଲଗାଲଗି ଘରେ ରହନ୍ତି । ଜଣେ ମରିଗଲେ ତାକୁ କୋଠରୀ ଭିତରେ ଶେଯ ତଳେ ଗାତ ଖୋଳି ପୋତି ଦିଅନ୍ତି ।

## ଜାଣନ୍ତି କି ?

୧. ଭାରତକୁ ଆଗତ ପ୍ରଥମ ଗ୍ରୀକ୍ ଦୂତ କିଏ ? କିଏ ତାଙ୍କୁ ପଠାଇଥିଲେ ?

୨. କେଉଁ ପାରସ୍ୟ ରାଜା ଭାରତ ବିଜୟ ପାଇଁ ଚେଷ୍ଟା କରି ବିଫଳ ହୋଇଥିଲେ?

୩. କେଉଁ ପାରସ୍ୟ ରାଜା ଭାରତର ଏକ କ୍ଷୁଦ୍ର ଅଂଶକୁ ନିଜ ସାମ୍ରାଜ୍ୟରେ ସାମିଲ୍ କରିଥିଲେ ?

୪. ଭାରତର ପୂର୍ବ ଉପକୂଳରେ ଇଷ୍ଟ ଇଣ୍ଡିଆ କୋମ୍ପାନି ନିର୍ମିତ ଦୁଇଟି ଦୁର୍ଗ କେଉଁ କେଉଁ ସ୍ଥାନରେ ଅବସ୍ଥିତ ଓ ସେ ଦୁଇଟିର ନାମ କ'ଣ ?

୫. ଜଣେ ବିଖ୍ୟାତ ବୀର ବିଲେଇ ଦେଖିଲେ ଡରୁଥିଲେ । କିଏ ସେ ବୀର ?

(ଉତ୍ତର ପୃଷ୍ଠା ୬୪ ରୁ ପାଇବେ)



## ନିଆଁ ଲାଗିଲେ କୂଅ ଖୋଳା!

ଶ୍ରୀପୁର ଗ୍ରାମର ଜମିଦାର ଖେଳଣ ଚୌଧୁରୀ ଭଲ ମଣିଷ ଥିଲେ, ସନ୍ଦେହ ନାହିଁ । କିନ୍ତୁ ସେ ଯେତିକି ଭଲ ମଣିଷ, ସେତିକି ଭୁଲା ମଣିଷ । ଉପରେ ପଡ଼ି କାମଦାମ ହାତକୁ ନେବେ, କିନ୍ତୁ ଠିକ୍ ସମୟରେ କିଛି କରିବେ ନାହିଁ ।

ସମସ୍ତେ କିନ୍ତୁ ଜାଣୁଥିଲେ ଯେ ଜମିଦାରଙ୍କ ହୃଦୟଟି ବଡ଼ ଭଲ । ଅସୁବିଧା ହେଲା ତାଙ୍କ ଅଳସୁଆମିକୁ ନେଇ । ଏକେ ଜମିଦାର, ତହିଁ ଉପରେ ପରୋପକାରୀ । ସମସ୍ତଙ୍କ ଶ୍ରଦ୍ଧାଭାଜନ । ତାଙ୍କୁ କିଏ ବା କ'ଣ କହିବ? ଥରେ ଥରେ ହାଟକୁ ଯାଇଥିବେ । କୌଣସି ସାଧୁଦଳ ଦେଖିଲେ କହିଦେବେ, "ଆଜି ରାତିରେ ଯାଇ ଆମ ଘରେ ଖାଇବା ପିଇବା କରନ୍ତୁ ।" ଘରକୁ କିନ୍ତୁ ସେ ଖବର ପଠାଇବେ ନାହିଁ । ନିଜେ କୌଣସି ବନ୍ଧୁ ଘରେ ଗପ କରି ରାତି ଅଧିକୁ ଫେରିବେ । ସାଧୁଦଳ ଆସି ପିଣ୍ଡାରେ ବସି ଯାଇଥିବେ ।

ତାଙ୍କର ଏ ଅଭ୍ୟାସ ଯୋଗୁଁ ସବୁଠାରୁ ବେଶି ହଇରାଣ ହେଉଥିଲା ତାଙ୍କ ଘରେ ସବୁ ବୁଝାଶୁଝା କରୁଥିବା ରଘୁ । ଥରେ ଥରେ ସେ ଭାବୁଥିଲା, କାମ ଛାଡି ଚାଲିଯିବ । କିନ୍ତୁ ଏକେ ତ ଜମିଦାର ତାକୁ ଭଲ ଦରମା ଦେଉଥିଲେ, ପୁଣି ତା'ର ବି ଜମିଦାରଙ୍କ ଉପରେ ବହୁତ ଶ୍ରଦ୍ଧା ଥିଲା । ତା' ବିନା ଚୌଧୁରୀ ହଇରାଣ ହେବେ ବୋଲି ସେ ବୁଝୁଥିଲା ।

ଏଇ ଧରନ୍ତୁ ଗାଁର ମହେଶ୍ୱର ମିଶ୍ରଙ୍କ ଝିଅ ବାହାଘର କଥା । ଯେମିତି ଜମିଦାର ଶୁଣିଛନ୍ତି, ସେମିତି କହିଲେ, "ମିଶ୍ରେ! ତମେ ବାହାଘର ବେଦୀ ନିର୍ମାଣ କାମ ମୋ ଉପରେ ଛାଡି ଦିଅ । ମୁଁ ବଢ଼ିଆ କରି ବନେଇ ଦେବି!"









ବାହାଘର ତିନିଦିନ ଅଛି ଜମିଦାର ତାଙ୍କ ସମ୍ବଧି ଘରକୁ ବାହାରି ଗଲେ । ରଘୁ କହିଲା, "ଆଜ୍ଞା, ମହେଶ୍ୱର ମିଶ୍ର ଝିଅ ବାହାଘର ପାଇଁ ଆପଣ ବେଦୀ ବନାଇ ଦେବେ ବୋଲି କହିଥିଲେ !"

"ଆରେ ରଘୁ, ସେପାଇଁ ତ ଗୋଟାଏ ଯୁଗ ବାକି ଅଛି । ମୁଁ କାଲି ଫେରି ଆସିବି ନାହିଁ ? କ'ଣ, ସମ୍ବଧି ଘର ଭାତ ମୋତେ ବେଶି ସୁଆଦୁ ଲାଗିବ ବୋଲି ଭାବୁଛୁ ?"

ଭାତ ସୁଆଦୁ ଲାଗୁ ବା ନ ଲାଗୁ, ଚୌଧୁରୀ କିନ୍ତୁ ପରଦିନ ଫେରିଲେ ନାହିଁ । ଯେଉଁଦିନ ବାହାଘର ସେହିଦିନ ସକାଳେ ରଘୁକୁ ଲାଗିପଡ଼ି ସବୁ କରିବାକୁ ହେଲା । କାରଣ ମିଶ୍ରେ ନିଜେ ସେ କାମ କଲେ ଜମିଦାରଙ୍କ ଅପମାନ ହେବ ! ବାହାଘରକୁ ଘଣ୍ଟାଏ ବାକି ଅଛି, ଜମିଦାର ଫେରି ଆସି ରଘୁକୁ କହିଲେ, "ଆରେ ମିଶ୍ରଙ୍କ ଘରେ ଗୋଟାଏ ବେଦୀ ବନାଇବା କଥା···"

"ବାବୁ, ବେଦୀ ବନା ସରିଛି । କିନ୍ତୁ ଆପଣ ଆଉ ଏମିତି ଅଯଥା କାମ ହାତକୁ ନେବେ ନାହିଁ ।" ରଘୁ କହିଲା ।

"ଆରେ, ନାହିଁ, ନାହିଁ, ଅଯଥା କାମ ଆଉ କରିବା ନାହିଁ । ହଁ, ଶୁଣ, ଗୋଟାଏ ଯଥା କାମ କରିଛି । ରାଜା ଶିକାର ପାଇଁ ଜମ୍ବୀରପୁର ବଣକୁ ଯିବେ । ବାଟ ତ ଆମ ଗାଁ ପାଖଦେଇ ଯାଇଛି । ଆମ ଘରେ ଅତିଥି ହେବାକୁ ନ କହିଲେ ଆମ ସମ୍ମାନ ଯିବ ନାହିଁ ? ତେଣୁ ମୁଁ ଚିଠି ଲେଖି ଲୋକ ପଠାଇଛି, ଦିନଟିଏ ଏଠି ରହିବେ ।" ଚୌଧୁରୀ କହିଲେ ।

"ବାବୁ, ଆପଣ ଇଏ କଲେ କ'ଣ ? ରାଜା ଭୀଷଣ ବଦ୍‌ରାଗୀ ବୋଲି ଆପଣ ଜାଣନ୍ତି । ସାମାନ୍ୟ ତ୍ରୁଟି ହେଲେ ସେ ଖପା ହୋଇ ଯାହା ମନ ତାହା କରି ବସିବେ । ଆପଣ ବୃଥାରେ କାହିଁକି ସେଥିରେ ପଶିଲେ ?" ରଘୁ ଆତଙ୍କିତ ହୋଇ ପଚାରିଲା ।

ଚୌଧୁରୀ ହସିଲେ । "ଆରେ, ନିମନ୍ତ୍ରଣ ନ କଲେ ଅଭଦ୍ରତା ହୁଅନ୍ତା ନାହିଁ ?" ସେ ଏତିକି କହିଲେ ।



ରଘୁ ଆଉ କହିବ କ'ଣ? କହିବା ଲାଭ କ'ଣ? ରାଜାଙ୍କୁ ଥରେ ନିମନ୍ତ୍ରଣ କରିଦେବା ପରେ ସେ ନିମନ୍ତ୍ରଣ ତ ଆଉ ଫେରାଇ ଆଣି ହେବନାହିଁ! ଯେତେ ଅସୁବିଧା ହେଲେ ହେଉ!

"ରାଜା କେବେ ଆସୁଛନ୍ତି?" ରଘୁ ପଚାରିଲା।

"ପଅର ଦିନ!" ଜମିଦାର କହିଲେ।

"ପଅର ଦିନ? ହେ ଭଗବାନ! ଆମ ଅତିଥିଭବନ ତ ଅପରିଚ୍ଛନ୍ନ ହୋଇ ପଡ଼ିଛି!" ରଘୁ କାନ୍ଦ କାନ୍ଦ ହୋଇ କହିଲା।

"ସଫା କରି ଦେବା କାଲି ଆଡ଼ୁ। ହଁ ହେଇଟି ତାଙ୍କ ମଣୋହର ବିବରଣୀ। କାଲି କାହାକୁ ପଠାଇ ସଉଦାପତ୍ର କରି ଆଣ।" ଜମିଦାର କହିଲେ।

"ଆପଣ କହୁଛନ୍ତି କ'ଣ? ଏସବୁ ଟଙ୍କ ଯାଇ ସହରରେ ମିଳିବ। ପୁଣି ଏସବୁ ପାଇଁ ଭଲ ରାନ୍ଧୁଣିଆ ଆସିବା ଦରକାର। ସମୟ କାହିଁ?"

"କାଲି ଦେଖିବା!" ଚୌଧରୀ ହାଇ ମାରି କହିଲେ।

ରଘୁ ମୁହୂର୍ତ୍ତେ ବିଳମ୍ବ ନକରି କାମରେ ଲାଗିଗଲା। ସବୁ କାମ ତାକୁ ବୁଝିବାକୁ ହେବ। କିନ୍ତୁ ଯେତେ ଚେଷ୍ଟା କଲେ ବି ସେଦିନ ଓ ପରଦିନ ଭିତରେ ଅତିଥି ଭବନ ରାଜାଙ୍କ ରହିଲା ଭଳି ଅବସ୍ଥାକୁ ଆସି ପାରିଲା ନାହିଁ।

"ଆଉ ଗୋଟାଏ ଦିନ ସମୟ ଥା'ନ୍ତା ଭଲ!" ସେ ଦୀର୍ଘ ନିଃଶ୍ୱାସ ଛାଡି କହିଲା ସେତିକି ବେଳେ ରାଜନଗରରୁ ଲୋକ ଆସି ଖବର ଦେଲା, ରାଜା ଗୋଟାଏ ଜରୁରୀ କାମ ଯୋଗୁଁ ଦୁଇଦିନ ଡେରିରେ ଆସିବେ।

ରଘୁ ଜୀବନ ପାଇଲା। ସେ ଲାଗିପଡ଼ି ଅତିଥି ଭବନରେ ପରଦିନ ସନ୍ଧ୍ୟା ସୁଦ୍ଧା ରାଜାଙ୍କ ରହଣି ପାଇଁ ସବୁ ବ୍ୟବସ୍ଥା କରିଦେଲା।

ରାଜା ଶିକାରରୁ ଫେରି ଖାଇବା କଥା। ରୋଷେଇବାସ ସରିଛି। ସବୁ ଠିଆରେ ହୋଇଛି। ହଠାତ୍ ଚୌଧୁରୀ କହିଲେ, "ଆରେ, ମୁଁ ଭୁଲି ଯାଇଛି, ରାଜାଙ୍କ

ପଲଉ, ତରକାରି କୌଣସି ବସ୍ତୁରେ ଘିଅ ପଡ଼ିବ ନାହିଁ । ସବୁ ଟଟକା ମାଖନରେ ହେବ ।"

ରଘୁ ଓ ପାଚକମାନେ ମୁଣ୍ଡରେ ହାତ ଦେଇ ବସିଲେ । "ବାବୁ, ଆପଣ ସକାଳେ ଏତକ କହି ପାରିଲେ ନାହିଁ ? ବର୍ତ୍ତମାନ ସବୁ ତ ନଷ୍ଟ ହେବ । ପୁଣି ଆଉ କିସ୍ତି ଏ ରାନ୍ଧଣା ପାଇଁ ଟଟକା ମାଖନ ଆଖି ପିଛୁଳାକେ ମିଳିବ କାହୁଁ ?"

ସେତିକିବେଳେ ଜଣେ ରାଜ-ପରିଚାରକ ଆସି ଖବର ଦେଲା, "ରାଜାଙ୍କ ବୈଦ୍ୟ କହିଛନ୍ତି, ଆଜି ରାଜାଙ୍କ ଖାଦ୍ୟ ଦ୍ରବ୍ୟରେ ମାଖନ ପଡ଼ିବ ନାହିଁ । ସବୁ ଘିଅରେ ହେବ । ଯଦି ରନ୍ଧାରନ୍ଧି ସରିଥାଏ, ତେବେ ଅଳ୍ପ ଗୋଟାଏ ଦୁଇଟା ତରକାରି ଘିଅରେ କରିଦେଲେ ଚଳିବ ।"

ରଘୁ ହାତଯୋଡ଼ି କରି ତା' ଇଷ୍ଟଙ୍କୁ ପ୍ରଣାମ କଲା । ଅଧଘଣ୍ଟାକ ପରେ ରାଜା ପହଞ୍ଚିବା ମାତ୍ରେ ପଚାଶ ପ୍ରକାର ଖାଦ୍ୟ ଦ୍ରବ୍ୟ ପରଷି ଦିଆଗଲା । ଏତେ ଶୀଘ୍ର ସବୁ ଘିଅରେ ହୋଇଯାଇ ଥିବାର ଦେଖି ତାଙ୍କ ଆନନ୍ଦ କହିଲେ ନ ସରେ ।

"ରଘୁ, ମୁଁ ଶୁଣିଛି ତମେ ସବୁ ବ୍ୟବସ୍ଥା କରିଛ !" ରାଜା ରଘୁକୁ କହି ବିଦାୟ ନେଲେ ।

ରାଜା ଚାଲିଯିବା ମାତ୍ରେ ରଘୁ ଶ୍ରୀଧରଙ୍କୁ କହିଲା, "ବାବୁ, ଏଥର ସିନା ଭଗବାନ ଆମକୁ ରକ୍ଷା କଲେ, ଆଉ ଥରକୁ କ'ଣ ହେବ କିଏ କହିବ ? ମୋତେ ବିଦାୟ ଦିଅନ୍ତୁ ।"

ଜମିଦାର ହସି ହସି କହିଲେ, "ସବୁଠାରୁ ବଡ଼ ପରୀକ୍ଷା ତ କଟିଗଲା । ଆଉ ଚିନ୍ତା କାହିଁକି ? ତା' ଛଡ଼ା ମୋ ଭୁଲପଣ କଥା ରାଜା ବି ଜାଣି ସାରିଛନ୍ତି । ତୋ ଗୁଣ କଥା ବି ଜାଣିଗଲେ । ଆଉ ଡର କାହାକୁ, କାହାପାଇଁ ?"






[ ୪ ]

[ପଦ୍ମପାଦ ପିଙ୍ଗଳକୁ ଭଲ୍ଲୁକକେତୁର ମାୟାଜାଲରୁ ରକ୍ଷା କଲା। ତା'ପରେ ଦୁହେଁ ଭଲ୍ଲୁକ ପର୍ବତ ଆଡ଼େ ଗଲେ। ଧୂଆଁ ରୂପରେ ବିଚରଣଶୀଳ ପିଶାଚମାନେ ସେ ଦୁହିଁଙ୍କ ପଥରୋଧ କରିବାକୁ ଚେଷ୍ଟା କଲେ। କିନ୍ତୁ ପଦ୍ମପାଦର ତନ୍ତ୍ରଶକ୍ତି ଏବଂ ପିଙ୍ଗଳର ସାହସ ଯୋଗୁଁ ସେମାନେ କିଛି କରି ପାରିଲେ ନାହିଁ। ଭଲ୍ଲୁକ ପର୍ବତର ଘାଟି ଉପରେ, ନଦୀ ତୀରରେ ମହାମାୟୁଙ୍କ ଦୁଇ ଶିଷ୍ୟ ପଦ୍ମପାଦକୁ ସାହାଯ୍ୟ କରିବାର ପ୍ରତିଶ୍ରୁତି ଦେଇ ଅଦୃଶ୍ୟ ହୋଇଗଲେ। ତାପରେ···]

ମହାମାୟୁଙ୍କର ଦୁଇ ଶିଷ୍ୟ ଆଖି ଆଗରେ ଅଦୃଶ୍ୟ ହୋଇଯିବାର ଦେଖି ପିଙ୍ଗଳ ବିସ୍ମୟ ଓ ଭୟରେ ଥରିଗଲା।

"ପଦ୍ମପାଦ, ଏ ଦୁଇଜଣ ତ ଅଦୃଶ୍ୟ ହୋଇଗଲେ। ପୁଣି କୁମ୍ଭୀର ହୋଇ ଯଦି ନଦୀ ପଥରେ ପଳାଇଯିବେ, ତେବେ କ'ଣ କରିବା ?" ଶଙ୍କିତ କଣ୍ଠରେ ପିଙ୍ଗଳ ପଚାରିଲା।

"ତେବେ କ'ଣ କରିବା ?" ପଦ୍ମପାଦ ପ୍ରଶ୍ନର ପୁନରାବୃତ୍ତି କଲା। ଟିକିଏ ନୀରବ ରହି ସେ ପୁଣି କହିଲା, "ତମେ ଜାଣ, ଏ ଦୁଇଜଣଙ୍କୁ ଆୟତ୍ତ କରିବାକୁ ଯାଇ ମୋର










ଦୁଇଜଣ ଭାଇ ପ୍ରାଣ ଦେଇଛନ୍ତି । ମୁଁ ମରୁ ମରୁ କୌଣସି ମତେ ବଞ୍ଚିଗଲି । ଯଦି ଏସବୁ ସତ୍ତ୍ୱେ ଆମ ଅଭିଯାନ ବ୍ୟର୍ଥ ହୁଏ, ତେବେ ଆମର ଦୁର୍ଭାଗ୍ୟ ଛଡ଼ା ଆଉ କ'ଣ ?"

"କିନ୍ତୁ ସେ ଦୁହେଁ ଗଲେ କୁଆଡ଼େ ?" ପିଙ୍ଗଳ ଉତ୍କଣ୍ଠିତ ଭାବରେ ପଚାରିଲା ।

"ଭୟ ନାହିଁ । ବର୍ତ୍ତମାନ ଆମେ ଏ ନଦୀ ଗର୍ଭରେ ଥିବା ତ୍ୟକ୍ତ ମନ୍ଦିର ଭିତରେ କିପରି ପ୍ରବେଶ କରିବା, ତାହାହିଁ ପ୍ରଶ୍ନ । ମନ୍ଦିରର ପାଞ୍ଚଗୋଟି ଦ୍ୱାର । ସବୁ ଖୋଲିବା ପରେ ଯାଇ ଆମେ ମହାମାୟୀଙ୍କ ସମାଧି ଥିବା କୋଠରୀ ଭିତରେ ପ୍ରବେଶ କରି ପାରିବା ।" ପଦ୍ମପାଦ ପିଙ୍ଗଳକୁ ଆଶ୍ୱାସନା ଦେଇ କହିଲା ।

"ମୋତେ ଭଲ ଭାବରେ ସନ୍ତରଣ କରି ଆସେ ନାହିଁ । ନଦୀ ଗର୍ଭରେ ଥିବା ମନ୍ଦିର ପାଖରେ ମୁଁ ବା କିପରି ଭାବରେ ପହଞ୍ଚିବି ?" ପିଙ୍ଗଳ ଅନ୍ୟ ଏକ ଆଶଙ୍କା ପ୍ରକାଶ କଲା ।

ଏଥର ପଦ୍ମପାଦ ବଡ଼ ପାଟିରେ ହସିଲା ଓ କହିଲା, "ଆରେ ଭାଇ, ତମେ ମୋଟେ ସନ୍ତରଣ ଜାଣି ନଥିଲେ ବି ଚଳିବ । ଯାହା ଦରକାର, ତାହା ସାହସ ଓ ଧୈର୍ଯ୍ୟ । ନଦୀ ଶୁଖିଯିବା ପାଇଁ ପ୍ରଥମେ ଆମକୁ ଚେଷ୍ଟା କରିବାକୁ ପଡ଼ିବ । ଏଥିରେ ମହାମାୟୀଙ୍କର ଦୁଇ ଶିଷ୍ୟ ଜମ୍ବୁର୍ ଆମର ସହାୟତା କରିବେ ।"

ପିଙ୍ଗଳ ବିସ୍ମୟରେ ଆଖି ବଡ଼ ବଡ଼ କରି ପଚାରିଲା, "ଏ ଗଭୀର ନଦୀ ଶୁଖିଯିବ—ଏଭଳି ଆଶା କରିବା ବିଡମ୍ବନା ନୁହେଁ...?"

"ନଦୀ ନ ଶୁଖିଲେ ଆମ କାମ ସଫଳ ହେବାର ଆଶା ନାହିଁ । ସେ ଦିଗରେ ବର୍ତ୍ତମାନ ଆମକୁ ତତ୍ପର ହେବାକୁ ପଡ଼ିବ । ଶୁଣ । ମୁଁ ବର୍ତ୍ତମାନ ମନ୍ତ୍ର ପଢ଼ି ଧ୍ୟାନସ୍ଥ ହେବି । ସେତେବେଳେ ମୋତେ ଓ ମୋ ଆଗରେ ଥିବା ଆବଶ୍ୟକୀୟ ଉପକରଣମାନ ତମେ ରକ୍ଷା କରୁଥିବ ।" ପଦ୍ମପାଦ କହିଲା ।

"ମୁଁ ପୁଣି ତମକୁ ରକ୍ଷା କରିବି ?" ଆଶ୍ଚର୍ଯ୍ୟ ହୋଇ ପିଙ୍ଗଳ ପଚାରିଲା । ଯେଉଁ ପଦ୍ମପାଦ ଗୋଟାଏ ପରେ ଗୋଟାଏ ଅଶ୍ଚର୍ଯ୍ୟ କାମ କରି କରି ଚାଲିଛି, ତାକୁ ତା'ଭଳି ଲୋକ

କିପରି ରକ୍ଷା କରିବ ? ସେ ଏକଥା ମୋଟେ ବୁଝିପାରିଲା ନାହିଁ ।

କିନ୍ତୁ ପଦ୍ମପାଦ ବୁଝିଥିଲା, ପିଙ୍ଗଳର ସାହାଯ୍ୟ ବିନା କାର୍ଯ୍ୟସିଦ୍ଧି ଅସମ୍ଭବ । ସେ ପିଙ୍ଗଳକୁ ଉତ୍ସାହ ଦେଇ କହିଲା, "ନା, ମୁଁ ଅଛା କରୁନାହିଁ । ତମେହିଁ ମୋତେ ରକ୍ଷା କରୁଥିବ । ମୁଁ ତ ଆଖି ବୁଜି ଧ୍ୟାନସ୍ଥ ହେବି । ମୋ ତପୁର୍ଦ୍ଦିଗରେ ସେତେବେଳେ କ'ଣ ହେବ, ସେକଥା ମୁଁ କାହୁଁ ଜାଣିବି ? ତମକୁ ସଜାଗ ରହିବାକୁ ହେବ । ନିଅ ଏଇ ଗଦା । ଇଏ ତମ କାମରେ ଆସିବ ।"

ପଦ୍ମପାଦ ଶୂନ୍ୟରେ ଥରେ ହାତ ବୁଲାଇ ଆଣିଲା । ହଠାତ୍ ତା' ହାତରେ ଦେଖାଦେଲା ଏକ ଗଦା । ସେ ତାକୁ ପିଙ୍ଗଳକୁ ଧରାଇଦେଲା ।

ହାତରେ ଗଦା ପଡ଼ିବା ମାତ୍ରେ ପିଙ୍ଗଳର ଆତ୍ମ-ବିଶ୍ୱାସ ବଢ଼ିଗଲା । ସେ ଥରେ ସେ ସୁନ୍ଦର ଗଦାକୁ ବୁଲାଇ ତା'ପରେ କାନ୍ଧରେ ପକାଇଲା । ସତେ ଅବା ସେ ଭୀମ !

ପଦ୍ମପାଦ ପୁଣି କହିଲା : ପିଙ୍ଗଳ, ଏଥର ମୁଁ ଧ୍ୟାନରେ ବସିଲି । ଯେତେ ମାୟାବୀ ପିଶାଚ ଆସି ଏଠି ବିଭ୍ରାଟ କରିବାକୁ ଚେଷ୍ଟା କରିବେ, ସେମାନଙ୍କୁ ତଡ଼ିବା ତମର ଦାୟିତ୍ୱ । ନଦୀ ଶୁଖାଇବା ମୋର ସାଧନାର ଉଦ୍ଦେଶ୍ୟ ।"

ପିଙ୍ଗଳ ଉତ୍ସାହଭରେ କହିଲା, "ବେଶ୍ । ଏ ଗଦା ସାହାଯ୍ୟରେ ମୁଁ ଯମରାଜଙ୍କୁ ବି



ହଟାଇଦେଇ ପାରିବି ବୋଲି ଭାବୁଛି । ତମେ ନିଶ୍ଚିନ୍ତ ହୋଇ ଯାହା କରିବାର କର ।"

ପଦ୍ମପାଦ ପିଙ୍ଗଳକୁ ଥରେ ହସ ହସ ମୁହଁରେ ଅନାଇ ତା'ପରେ ନଦୀ କୂଳରେ ପଦ୍ମାସନ ପକାଇ ବସିଲା । ତିନିଥର ନଦୀ ଜଳ ହାତରେ ଉଠାଇ ସେ ମନ୍ତ୍ର ଉଚ୍ଚାରଣ କରି ତାକୁ ଧିରେ ଧିରେ ବୁନ୍ଦା ବୁନ୍ଦା କରି ତଳେ ପକାଉଥାଏ । ତା'ପରେ ସେ ଆଖି ବନ୍ଦ କରି ଧୀର କଣ୍ଠରେ ମନ୍ତ୍ର ପଢ଼ିବାକୁ ଲାଗିଲା ।

ହଠାତ୍ ଆକାଶରୁ ଶୁଭିଲା ଗୋଟାଏ ଭୟଙ୍କର ଗର୍ଜନ । ତାହା ଶୁଣି ପିଙ୍ଗଳ ଚମକି ଉଠିଲା ଓ ଗଦା ଉଠାଇ ବୁଲାଇବାକୁ ଲାଗିଲା ।








ସେ ଦେଖୁଁ ଦେଖୁଁ ଆକାଶରେ ଖଣ୍ଡ ଖଣ୍ଡ କଳା ମେଘ ଦେଖାଦେଲା । ତା'ପରେ ସେ ମେଘ ଜମାଟ ହୋଇ କ୍ରମେ ଯେମିତ ତାହାର ଆଡ଼କୁ ମାଡ଼ି ଆସିଲା !

ପିଙ୍ଗଳ ଦେଖୁଥାଏ, ସେ କଳା ମେଘ ଗୋଟାଏ ହାତୀର ଆକାର ଗ୍ରହଣ କଲା । ପିଙ୍ଗଳ ବୁଝିଲା, ତାହା ମେଘ ନୁହେଁ, କୌଣସି ମାୟାବୀ । ସେ ଗଦା ଉଦ୍ୟତ କଲା । କିନ୍ତୁ ଗୁହୁଁ ଗୁହୁଁ ହାତୀ ଗୋଟାଏ ବିଶାଳ ପକ୍ଷୀରେ ପରିଣତ ହେଲା । ତା'ର ଦୁଇଟି ବୃହତ୍ ଡେଣା ଆକାଶରେ ଭୀଷଣ ଭାବରେ ବିସ୍ତୃତ ହେଉଥାଏ ।

"ଇଏ ନିଶ୍ଚେ ପିଶାଚ—ଗୋଟାଏ ଗଣ୍ଡଭେରୁଣ୍ଡ ପକ୍ଷୀର ରୂପ ନେଇ ଆସିଛି ।" ପିଙ୍ଗଳ ମନକୁ ମନ କହିଲା । ସେ ଡେଣା ମାଡ଼ରେ ଗଛମାନ ଉପାଡ଼ି ହୋଇ ପଡ଼ିବାକୁ ଲାଗିଲେ । ପକ୍ଷୀ ପିଙ୍ଗଳକୁ ଲକ୍ଷ୍ୟ କରିକି ମାଡ଼ି ଆସୁଥାଏ । ତା'ର ବର୍ଚ୍ଛା ଭଳି ଭୀଷଣ ଥଣ୍ଟ, ନିଆଁ ଭଳି ଦାଉ ଦାଉ ଜଳୁଥିବା ଆଖି ଦେଖିଲେ ସାଧାରଣ ଅବସ୍ଥାରେ ପିଙ୍ଗଳ ମୂର୍ଚ୍ଛା ଯାଇଥାନ୍ତା । କିନ୍ତୁ ସେ ବୁଝିପାରୁଥାଏ, ସେ ଗଦା ହାତରେ ଥିବା ହେତୁ ତା' ମନରୁ ଭୟ ପୁରାପୁରି ଦୂର ହୋଇ ଯାଇଥାଏ ।

ପକ୍ଷୀ ନିକଟତର ହେବା ମାତ୍ରେ ସେ ଗଦା ଉଠାଇ ତାକୁ ମାଡ଼ ଦେବାକୁ ପ୍ରସ୍ତୁତ ରହିଲା । କିନ୍ତୁ ପକ୍ଷୀର ଭୀଷଣ ପକ୍ଷ ସଞ୍ଚାଳନ ଯୋଗୁଁ ଯେଉଁ ପବନ ହେଲା, ସେଥିରେ ସେ ଖଣ୍ଡେ ଦୂରକୁ ପେଲି ହୋଇ ଚାଲିଗଲା । ପକ୍ଷୀ ତା'ର ବିରାଟ ଥଣ୍ଟରେ ପିଙ୍ଗଳକୁ ଆକ୍ରମଣ କରିବା ମାତ୍ରେ ପିଙ୍ଗଳ ଗଦାରେ ପ୍ରହାର କଲା । କିନ୍ତୁ ପକ୍ଷୀ ଦେହରେ ଆଘାତ ଲାଗିଲା ନାହିଁ । ସେ ଉଡ଼ି ପଳାଇଲା ।

ପିଙ୍ଗଳ ଏଥର ଆହୁରି ଦୃଢ଼ ଓ ସଜାଗ ଭାବରେ ଆକ୍ରମଣର ସମ୍ମୁଖୀନ ହେବାକୁ ନିଶ୍ଚୟ କଲା । ସେ ଅସତର୍କ ଥିବା ହେତୁ ପକ୍ଷୀର ଡେଣା ଚାଳନାର ପବନରେ ଉଡ଼ିଗଲା । ଏଥର ସେପରି ହେଲେ ଚଳିବ ନାହିଁ ।

ସେ ଏତକ ଭାବିବା ବେଳକୁ ଦେଖିଲା ପକ୍ଷୀ ପୁଣି ଭୀଷଣ ବେଗରେ ତା' ଆଡ଼କୁ ଝପଟି ଆସୁଛି । ସେ ଏଥର ଦୃଢ଼ ଭାବରେ ଗଦା

ଉଞ୍ଚାଇ ଠିଆ ହୋଇ ରହିଲା । ପକ୍ଷୀ ତା' ଉପରେ ଥଣ୍ଟ ଦ୍ୱାରା ଆକ୍ରମଣ କରିବାକୁ ଉଦ୍ୟତ ହେବା ମାତ୍ରେ ସେ ଗଦା ଯୋଗେ ପ୍ରହାର ବସାଇଦେଲା । ପକ୍ଷୀର ଅନେକ ଗୁଡ଼ିଏ ପକ୍ଷ ଛିଡ଼ି ପଡ଼ିଲା । ସେ ପଛକୁ ହଟି ପଳାଇଗଲା ।



ପିଙ୍ଗଳର ଆନନ୍ଦ କହିଲେ ନ ସରେ । ସେ ପାଟି କରି ପଦ୍ମପାଦର ଜୟଜୟକାର କଲା ଓ ଗଦା କାନ୍ଧରେ ପକାଇ ଥରେ ତା' ଚାରିକଡ଼େ ଡେଇଁ ଡେଇଁ ବୁଲିଗଲା ।

ପଦ୍ମପାଦ ଗମ୍ଭୀର ଧ୍ୟାନମଗ୍ନ ଥିଲା । ଥରେ ଥରେ ସେ ହଲଚଲ ହେଉଥାଏ । କିନ୍ତୁ ଏତେ ଶବ୍ଦ ସତ୍ତ୍ୱେ ତା'ର ଧ୍ୟାନ ଭଙ୍ଗ ନ ହେବାର ଦେଖି ପିଙ୍ଗଳ ବିସ୍ମିତ ହେଲା ।

ପିଙ୍ଗଳ ହଠାତ୍ ଶୁଣିଲା ମଧୁର ସଙ୍ଗୀତ ଧ୍ୱନି । କୌଣସି କୋକିଳ କଣ୍ଠ ଗାୟକ ସାଙ୍ଗକୁ କୌଣସି ଅପୂର୍ବ ବାଦ୍ୟ ଯନ୍ତ୍ରର ସହଯୋଗ ଘଟିଥିଲା । ମୁଗ୍ଧ ହୋଇ ପିଙ୍ଗଳ ସେ ସଙ୍ଗୀତ ଶୁଣିବାକୁ ଲାଗିଲା ।

ସେଠାରେ ସେଭଳି ସଙ୍ଗୀତ କିପରି ସମ୍ଭବ ହେଲା, ସେକଥା ଭାବି ସେ ବିସ୍ମିତ ହେଲା । ସେ ଏଣେତେଣେ ଅନାଇ ସେ ସଙ୍ଗୀତରେ ଉତ୍ପତ୍ତିସ୍ଥଳ ଠାବ କରିବାକୁ ଚେଷ୍ଟା କରୁଛି, ଦେଖିଲା ଜଣେ ରୂପବତୀ ନର୍ତ୍ତକୀ ନାଚି ନାଚି ତା' ଆଡ଼େ ଆସୁଛି ।

ପିଙ୍ଗଳ, ତମ ରୂପ ଗୁଣରେ ମୁଁ ବିଲ୍‌କୁଲ ମୁଗ୍ଧ । ଚାଲ ବିବାହ କରିବା । ମୋତେ ବିବାହ କଲେ ତମକୁ ବିପୁଳ ଐଶ୍ୱର୍ଯ୍ୟ ମିଳିବ ।" ନର୍ତ୍ତକୀ ପିଙ୍ଗଳ ପାଖକୁ ଲାଗିଆସି କହିଲା ।

ସେଠାରେ ସେପରି ଅଚାନକ ଭାବରେ ସୁନ୍ଦରୀ ନର୍ତ୍ତକୀ ବାହାରି ପଡ଼ିବାର ଦେଖି ସିଏ ଯେ ପିଶାଚ ଛଡ଼ା ଆଉ କେହି ହୋଇ ନପାରେ, ଏତକ ବୁଝିବାକୁ ପିଙ୍ଗଳକୁ ବିଳମ୍ବ ହେଲା ନାହିଁ । ସେ ଗମ୍ଭୀର ହୋଇ କହିଲା, "ତମେ ମୋ ରୂପ ଗୁଣରେ ମୁଗ୍ଧ ହୋଇଗଲ ? ସୁନ୍ଦରୀ ! ତମେ ବୋଧହୁଏ ଭାବିଛ ମୁଁ କୌଣସି ରାଜପୁତ୍ର ! ଶୁଣ, ମୁଁ ସାମାନ୍ୟ ଧୀବରଟିଏ ମାତ୍ର ।"

"ଧୀବର ହେଲ ତ କ'ଣ ହେଲା ? ମୋତେ ବିବାହ ହେଲେ ତ ପୃଥିବୀର

ସବୁଠାରୁ ବଡ଼ ଧନୀ ବନିଯିବ !" ଏହା କହି ନର୍ତ୍ତକୀ ପୁଣି ନାଚିବାକୁ ଆରମ୍ଭ କଲା ।

"ନର୍ତ୍ତକୀ ! ତମେ ନାଚୁଛ ଦେଖୁଛି, ଗାଉଛ ଶୁଣୁଛି । କିନ୍ତୁ ତମର ଏ ନୃତ୍ୟ ଗୀତ ସାଙ୍ଗକୁ ଯନ୍ତ୍ରସଙ୍ଗୀତ କାହୁଁ ଆସୁଛି ? କାହିଁ, କୌଣସି ବାଦକ ତ ମୋ ଆଖିରେ ପଡ଼ୁ ନାହାନ୍ତି !" ପିଙ୍ଗଳ କୌତୁହଳ ପ୍ରକଟ କଲା ।

"ତମେ ଗନ୍ଧର୍ବ ଜାତି କଥା ଶୁଣିଛ ତ ? ମୁଁ ସେହି ଜାତିର କନ୍ୟା । ଖେଚରୀ । ମୋତେ ବିବାହ କଲେ ତମେ ମୋ ସାଥିରେ ବାଦ୍ୟ କରୁଥିବା ଲୋକଙ୍କୁ ଦେଖି ପାରିବ ।"




"ଓ, ତମେ ଆକାଶରେ ବିଚରଣ କରୁଥିବା ଗନ୍ଧର୍ବ କନ୍ୟା ପରି !" ଏହା କହି ଗଦା ଉଞ୍ଚାଇ ପିଙ୍ଗଳ ତା' ଆଡ଼େ ଅଗ୍ରସର ହେଲା ।

"ପିଙ୍ଗଳ ! ତମେ ଗଦା ଉଞ୍ଚାଇଛ କାହିଁକି ? ମୋତେ ଅସ୍ତ୍ରଶସ୍ତ୍ର ଦେଖିଲେ ଡରଲାଗେ ।" ଏହା କହି ସୁନ୍ଦରୀ ପଛେଇବାକୁ ଲାଗିଲା ।

"ସୁନ୍ଦରୀ! ତମେ ପରା ମୋତେ ବିବାହ କରିବ? ଆମ ବଂଶର ଗୋଟାଏ ପରମ୍ପରା ଅଛି । ଯିଏ କନ୍ୟା ହେବ, ତାକୁ ପ୍ରଥମେ ମୁଣ୍ଡରେ ଗଦା ପ୍ରହାର ସହ୍ୟ କରିବାକୁ ପଡ଼ିବ । ପରମ୍ପରା କପରି ଭାଙ୍ଗିବ କହିଲ ? ଆସ, ଆସ । ଗୋଟାଏ ମାତ୍ର ଗଦା ପ୍ରହାର ଦିଏଁ ।" ପିଙ୍ଗଳ ଅନୁରୋଧ କରିବା ଭଙ୍ଗୀରେ କହି ନର୍ତ୍ତକୀ ଆଡ଼େ ଅଗ୍ରସର ହେଲା ।

"ଶୁଣ, ଶୁଣ—" ନର୍ତ୍ତକୀ ପାଟିକଲା । କିନ୍ତୁ କିଛି ନ ଶୁଣି ପିଙ୍ଗଳ ଗଦାରେ ପ୍ରହାର ଦେଲା । ସଙ୍ଗେ ସଙ୍ଗେ ସେ ସୁନ୍ଦରୀ ଏକ ବିକଟ ପିଶାଚୀରେ ପରିଣତ ହୋଇ ଚିତ୍କାର କରି ଦୌଡ଼ି ପଳାଇଗଲା ।

ପିଙ୍ଗଳ ପୁଣି ଆନନ୍ଦରେ ପଦ୍ମପାଦର ଜୟଗାନ କରି ଗଦା ବୁଲାଇ ହେଇଁଲା ଓ ନିଜକୁ କହିଲା, "ପିଙ୍ଗଳ! ସାବାସ୍ ବେଟା! ଆଜି ଦୁଇ ଦୁଇଟା ପିଶାଚର ମୁକାବିଲା କଲୁ!"

ହଠାତ୍ ତା' ଆଖି ନଦୀ ଗର୍ଭକୁ ଗଲା । ସେ ଆଶ୍ଚର୍ଯ୍ୟ ହୋଇ ଦେଖିଲା, ନଦୀର ଜଳ

କ୍ଷୀପ୍ର ଭାବରେ ଶୁଖି ଯାଉଛି । ବାସ୍ତବିକ ଯେ ଏହା ସମ୍ଭବ ହେବ, ସେକଥା ସେ କଳ୍ପନା କରି ନଥିଲା । ଆନନ୍ଦରେ ସେ ପୁଣି ପଦ୍ମପାଦର ଜୟଧ୍ୱନି ଦେଲା ।

ପଦ୍ମପାଦ ଆଖି ଖୋଲିଲା । ପିଙ୍ଗଳ ଖୁସିରେ ନାଚି ଯାଇ କହିଲା, "ଦେଖ, ଦେଖ, ପଦ୍ମପାଦ । ନଦୀ ଶୁଖି ଆସୁଛି । ଜଳଚର ପ୍ରାଣୀମାନଙ୍କ ଚଞ୍ଚଳତା ଲକ୍ଷ୍ୟ କରିବା କଥା !"

"ସାବାସ୍ ! ମହାମାୟୀଙ୍କର ଦୁଇ ଶିଷ୍ୟ ସେମାନଙ୍କ କଥା ରକ୍ଷା କରିଛନ୍ତି । କିନ୍ତୁ ଏ ପର୍ଯ୍ୟନ୍ତ ଟ୍ୟାକ୍ସି ମନ୍ଦିର କାହିଁ ଦେଖା ପଡୁନାହିଁ ।

ଯେତିକିବେଳେ ନଦୀ ଗର୍ଭରୁ କିଛି ଉପରକୁ ଉଠିବା ଭଳି ଲାଗିଲା ।

"ଦେଖ, ଦେଖ, ଗୋଟାଏ ମନ୍ଦିରର ଚୂଡ଼ା ଦେଖା ଯାଉଛି । ଏହି ମନ୍ଦିର ଭିତରେ ମହାମାୟୀଙ୍କ ସମାଧି ଅବସ୍ଥିତ କି ?" ପିଙ୍ଗଳ ମନ୍ଦିର ଆଡ଼େ ଅଙ୍ଗୁଳି ଦେଖାଇ ପଚାରିଲା ।

"ହଁ, ହଁ, ଏଇ ହେଲା ସେ ମନ୍ଦିର । ପାଣି ପୂରା ଶୁଖିଗଲେ ମହାମାୟୀଙ୍କର ଦୁଇ ଶିଷ୍ୟ ଆସି ଆମ ପାଖରେ ପହଞ୍ଚିବେ । ଅଚ୍ଛା, ପିଙ୍ଗଳ, ମୁଁ ଧ୍ୟାନସ୍ଥ ଥିବାବେଳେ କୌଣସି ପିଶାଚ ଆସି ବିଭ୍ରାଟ କରିନାହିଁ ?"

"କରି ନାହିଁ ବୋଇଲେ ? ଜଣେ ପିଶାଚ କ'ଣ ? ଯୋଡ଼ାଏ ଆସିଥିଲେ ।" ପିଙ୍ଗଳ ସବୁ କହିଗଲା ।

ପ୍ରୀତ ହୋଇ ପିଙ୍ଗଳକୁ ବାହାବା ଦେଇ ପଦ୍ମପାଦ କହିଲା, "ତମେ ଯାହା କରିଛ, ତାହା ବାସ୍ତବିକ ଅସାଧାରଣ କୃତିତ୍ୱର ପରିଚୟ । ମନ୍ଦିର ଭିତରେ ପଶିଲା ବେଳେ ଏହିପରି ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିବ ।"

କ୍ରମେ ପୂରା ମନ୍ଦିର ଦେଖାଗଲା । ଦ୍ୱାର ଦେଶରେ ମହାମାୟୀଙ୍କର ଦୁଇ ଶିଷ୍ୟ ଠିଆ ହୋଇଥିଲେ । ସେମାନେ ପଦ୍ମପାଦ ଆଡ଼େ ଅନାଇ ସମ୍ବୋଧନ କଲେ, "ହେ ମହା-ମାନ୍ତ୍ରିକ !"

(କ୍ରମଶଃ)



# ହାର ଜିତ୍

ନିଶା ଗରଜୁଥାଏ। ଛୁହାକୁ ଛୁହା ବର୍ଷା ହେଉଥାଏ। ଘନ ଘନ ବଜ୍ରପାତ ଧ୍ୱନି ଭିତରେ ଶୁଭିଯାଉଥାଏ ଶ୍ୱାନଶ୍ୱାପଦଙ୍କ ରଡ଼ ତଥା ଅଶରୀରୀମାନଙ୍କ ଅଟ୍ଟହାସ୍ୟ। ବିଜୁଳି ଝଲକରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ। ତା'ପରେ ତାକୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ଏ ଭୟଙ୍କର ରାତିରେ ତୁମେ ଏଭଳି ପରିଶ୍ରମ କରିବାର ମାନେ କ'ଣ? ଅନେକ ସମୟରେ ଲୋକେ ନିଜ ନିଜ ଶକ୍ତିର କାଳନା କରି ନ

## ବେତାଳ କଥା







ପାରି ବଡ଼ ବଡ଼ ଜାମ ମୁଣ୍ଡକୁ ନେଇ ଯାଆନ୍ତି । କିନ୍ତୁ ନେଇ ଆଣି ଥୋଇ ପାରନ୍ତି ନାହିଁ । ଗୋଟାଏ ଦୃଷ୍ଟାନ୍ତ ଦେଉଛି । ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ହେବ ।"

ବେତାଳ କହିଲା : ଭଦ୍ରଗିରିର ରାଜକୁମାର ସୁରସେନ୍ ପିଲାବେଳରୁ ସବୁ ପ୍ରକାର ଯୁଦ୍ଧବିଦ୍ୟା ଶିଖିବାରେ ଗଭୀର ଆଗ୍ରହ ପ୍ରକାଶ କଲେ । ସେ ଯେମିତି ତରବାରି ଚାଳନା କରିପାରୁଥାନ୍ତି, ସେମିତି ତୀର ମାରି ପାରୁଥାନ୍ତି । ପୁଣି ମଲ୍ଲଯୁଦ୍ଧରେ ବି ରାଜାଙ୍କ ସୈନ୍ୟବାହିନୀର ସବୁ କର୍ମଚାରୀଙ୍କୁ ସେ ସହଜରେ ବଳିଗଲେ । ଦିନେ ଲୋକେ ତାଙ୍କୁ ପୃଥିବୀର ସବୁଠାରୁ ବଡ଼ ଯୋଦ୍ଧା ବୋଲି କହିବେ, ସେ ଏଇ ସ୍ୱପ୍ନ ଦେଖୁଥିଲେ ।

ଦିନେ ପ୍ରାସାଦରେ ଆସି ପହଞ୍ଚିଲେ ସାଧୁ ବ୍ରହ୍ମାନନ୍ଦ । ସାଧୁଜୀ ଦେଶଦେଶାନ୍ତର ବୁଲିଥାନ୍ତି । ସବୁ ବିଷୟରେ ତାଙ୍କର ଅସାଧାରଣ ଜ୍ଞାନ ଥିଲା । ଯୁଦ୍ଧବିଦ୍ୟା ବିଷୟରେ ମଧ୍ୟ ତାଙ୍କର ଯଥେଷ୍ଟ ଜ୍ଞାନ ଥିଲା ।

ଦିନେ ରାଜକୁମାର ତାଙ୍କୁ ନିଜର କଳା କୌଶଳ ଦେଖାଇ ସାରି ପଚାରିଲେ, "ସାଧୁଜୀ ! ଆପଣ ତ ଦେଶ ବିଦେଶ ବୁଲୁଛନ୍ତି । ମୋଠୁଁ ବଡ଼ ବୀର ଆପଣଙ୍କ ଆଖିରେ ପଡ଼ିଛନ୍ତି କି ?"

ସାଧୁଜୀ କହିଲେ, "ତମ କୌଶଳ ଅସାଧାରଣ । କିନ୍ତୁ ବୀରତ୍ୱ କଥା ଯଦି କହିଲ, ତେବେ ମୁଁ ଜଣେ ଯୁବକକୁ ଅସାଧାରଣ ବୀର ବୋଲି ଜାଣେ । ସେ ଯୁବକର ନାମ ହେଲା ସୁବୀର । ସେ ତମର ରାଜ୍ୟ ସୀମାନ୍ତବର୍ତ୍ତି ସୁଜନପୁର ଗାଁର ବାସିନ୍ଦା । ବୀରତ୍ୱରେ ସୁବୀର ଓ ତୁମ ଭିତରେ କିଏ ବଡ଼, ସେ କଥା କହିବା ମୋ ପକ୍ଷରେ ସମ୍ଭବପର ନୁହେଁ ।"

ରାଜକୁମାର କୌତୁହଳୀ ହୋଇ ସୁବୀରର ଠିକଣା ନେଲେ ଓ ଜଣେ ସାଧାରଣ ଯୁବକର ଛଦ୍ମବେଶରେ ଯାଇ ସୁଜନପୁର ଗ୍ରାମରେ ପହଞ୍ଚିଲେ । ସେଠାରେ ଅନେକ ଲୋକଙ୍କ ସହ ମିଳି ମିଶି ସେ ସୁବୀର ସମ୍ପର୍କରେ ଅନେକ







ତଥ୍ୟ ସଂଗ୍ରହ କଲେ । ସେ ବୁଝିଲେ ଯେ ସୁବୀର ସହଜରେ କାହା ସହ ଲଢ଼ିବାକୁ ଆଗଭର ହୁଏନାହିଁ । ସେ ନିଜ ବୀରତ୍ୱ ବିଷୟରେ କେବେ ବି ଗର୍ବ କରେନାହିଁ । କିନ୍ତୁ ସେ ଅଞ୍ଚଳରେ ସମସ୍ତେ ତା ବଳ କଥା ଜାଣିଥିଲେ । ଥରେ ଗାଁରେ ଗୋଟାଏ ଡାକୁଦଳ ପଶିଲେ । ଗାଁ ଲୋକେ ଭୟରେ ଲୁଚିଲେ । କିନ୍ତୁ ସୁବୀର ସେମାନଙ୍କୁ ସାମ୍ନା କଲା ଓ ଲଢ଼େଇ କରି ସେମାନଙ୍କୁ କାବୁ କଲା । ଯଥା ସମୟରେ ସିପାହୀମାନେ ଆସି ଡାକୁ ଦଳକୁ ଧରି ପାରିଲେ ।

ରାଜକୁମାର ସୁରସେନ ବୁଝିଗଲେ ଯେ ସୁବୀରକୁ ନିସ୍ପୃହ ଦେଖି ଏବଂ ଯଶ ପାଇଁ ତା'ର କୌଣସି ଆକାଂକ୍ଷା ନାହିଁ ବୋଲି ବୁଝିପାରି ସିପାହୀମାନେ ତା' ଯୋଗୁଁ ଡାକୁଦଳ ଧରା ପଡ଼ିଥିବା କଥା ରାଜାଙ୍କୁ ଜଣାଇ ନାହାନ୍ତି । ଜଣାଇଥିଲେ ଅବଶ୍ୟ ରାଜା ସୁବୀରକୁ ଡକାଇ ପୁରସ୍କାର ଦେଇଥାନ୍ତେ । ସୁବୀର ରାଜନଗରକୁ ଯାଇଥିଲେ ରାଜକୁମାର ନିଶ୍ଚୟ ତାକୁ ଦେଖି ପାରିଥାନ୍ତେ ।

ଆଉ ଥରେ ବଣ ଭିତରେ ତା' ଉପରକୁ ଗୋଟାଏ ବାଘ ଝାମ୍ପ ମାରିଲା । କିନ୍ତୁ ସୁବୀର ବାଘକୁ ଭଲେ କଚୁଡ଼ି ଦେଲା ଓ ତାକୁ କାବୁ କରି ଗାଁର ପିଲାଙ୍କୁ ଦେଖାଇବା ନିମନ୍ତେ କାନ୍ଧରେ ବୋହି ନେଇ ଆସିଲା !

ସୁରସେନ୍ କିପରି ସୁବୀରକୁ ତାଙ୍କ ସହ ଲଢ଼ିବାକୁ ବାଧ୍ୟ କରିବେ, ସେକଥା ଚିନ୍ତା କରି ଗୋଟାଏ ଉପାୟ ସ୍ଥିର କଲେ । ରାତିରେ ସେ ଚୋର ଭଳି ସୁବୀର ଘରେ ପଶିଲେ ଓ ଜାଣି ଜାଣି ଜିନିଷପତ୍ର କଚୁଡ଼ି ଦେଲେ । ସୁବୀର ଉଠି ପଡ଼ି ଚୋର ପଶିବାର ଦେଖି ଆଶ୍ଚର୍ଯ୍ୟ ହେଲା—କାରଣ ଚୋରି କଲା ଭଳି ମୂଲ୍ୟବାନ ଜିନିଷ ତା' ଘରେ କିଛି ନଥିଲା ।

ଚୋରବେଶୀ ସୁରସେନ୍ ସୁବୀରକୁ ଦେଖି ପଳାଇବା ପରିବର୍ତ୍ତେ ଗୋଟାଏ-ହୁଙ୍କାର ଛାଡ଼ି ଆକ୍ରମଣ କଲେ । ଫଳରେ ବାଧ୍ୟ ହୋଇ ସୁବୀର ସୁରସେନଙ୍କ ସହ ଲଢ଼ିଲା ଓ ତାଙ୍କୁ

କାବୁ କଲା । ସୁରସେନ୍ ବୁଝିଲେ, ସୁବୀର ବାସ୍ତବିକ ବୀର ।

"ଚୋରି କରିବା ପାପ । ତା' ଛଡ଼ା ଏଥିରେ ବିପଦ କମ ନୁହେଁ । ତୁ ମେହେନତ୍ କରି ପେଟ ପୋଷୁନାହୁଁ କାହିଁକି ?" ସୁବୀର ପଚାରିଲେ ।

"ବାବୁ, ମୁଁ ବାସ୍ତବିକ ଚୋର ନୁହେଁ । ଖାଲି ତମ ସହ ଲଢ଼ିବାର ସୁଯୋଗ ପାଇଁ ଚୋର ଭଳି ଅଭିନୟ କଲି । ହଁ, ମେହେନତ୍ କରିବାକୁ ମୁଁ ପ୍ରସ୍ତୁତ । ମୋତେ କିଛି କାମ ଦେଇ ପାରିବେ ?" ସୁରସେନ୍ ପଚାରିଲେ ।

ସୁବୀର ଟିକିଏ ଚିନ୍ତା କରି କହିଲେ, "ବେଶ୍, ଭଲ କଥା । ମୋ ସାଙ୍ଗରେ ଜଙ୍ଗଲକୁ ଚାଲ । କାଠ କାଟିବ ।"

ପରଦିନ ସକାଳେ ସୁରସେନ୍ ସୁବୀର ସହ ଜଙ୍ଗଲକୁ ଗଲେ । ସୁବୀର ଗୋଟିଏ ଗଛ ଦେଖାଇଦେଲା । ସୁରସେନ୍ ତାକୁ କାଟିବାକୁ ଲାଗିଲେ । ସୁବୀର ଆଉ ଗୋଟିଏ ଗଛ କାଟିବାରେ ମନ ଦେଲେ । କିନ୍ତୁ ସୁବୀର ଗଛ କାଟି ତାକୁ ଖଣ୍ଡ ଖଣ୍ଡ କରି କାଠ ବିଡ଼ା ତିଆରି କରି ସାରିବା ବେଳକୁ ସୁରସେନ ଗଛ ଅଧା ବି କାଟି ନଥାଏ । ସେ ହାଲିଆ ହୋଇ ତଳେ ପଡ଼ିଯାଇ କହିଲା, "ମୁଁ ତୁମ ତୁଳନାରେ କିଛି ନୁହେଁ । ତୁମେ ବାସ୍ତବିକ ବୀର ।"

"ଆରେ ଭାଇ, ଗତ ରାତିରେ ତମେ ଚୋର ହୋଇ ପଶିଥିଲ । ଚୋର ମନରେ ଭୟ ଥାଏ । ତେଣୁ ସହଜରେ ମୁଁ ତମକୁ



ହରାଇଦେଲି । ବର୍ତ୍ତମାନ ମୁଁ ଯେ ତୁମଠୁଁ ସଫଳ କାମ ଶେଷ କଲି, ତାହା ବୀରତ୍ୱ ଯୋଗୁଁ ନୁହେଁ, ଅଭ୍ୟାସ ଯୋଗୁଁ । ତମେ କିଛିଦିନ ଅଭ୍ୟାସ କଲେ ମୋହର ଭଳି ଶୀଘ୍ର ଶୀଘ୍ର କାମ କରିପାରିବ ।" ସୁବୀର ବୁଝାଇ ଦେଲେ ।

ସୁରସେନ୍ ଉତ୍ସାହିତ ହେଲେ । ସେ ପୁଣି ପୃଥିବୀର ସବୁଠାରୁ ବଡ଼ ବୀର ଭାବରେ ଗଣ୍ୟ ହେବାର ସ୍ୱପ୍ନ ଦେଖିବାକୁ ଲାଗିଲେ ।

ପରଦିନ ସେ ସୁବୀରଙ୍କୁ ବଣ ଭିତରେ ପଚାରିଲେ, "ତମେ କ'ଣ କେବେ କାହାକୁ ଯୁଦ୍ଧ ପାଇଁ ଆହ୍ୱାନ କରନାହିଁ?"

"ନା । ଲଢ଼ିବା ମୋ ସ୍ୱଭାବ ନୁହେଁ । ତେବେ କେହି ଯଦି ବାହାଦୁରୀ ଦେଖାଇବ, ତେବେ ତାକୁ ଶିକ୍ଷା ଦେବାକୁ ମୁଁ ପ୍ରସ୍ତୁତ ।" ସୁବୀର କହିଲା । କିନ୍ତୁ ତା' କଥାରେ ଟିକେ ମଧ୍ୟ ଗର୍ବ ନଥିଲା ।

"ମୁଁ କହୁଛି, ତମେ ମୋ ସାଙ୍ଗରେ ଦ୍ୱନ୍ଦ୍ୱଯୁଦ୍ଧରେ ପ୍ରବୃତ୍ତ ହେଲେ ତମକୁ ମୁଁ ହରାଇଦେବି ।" ସୁରସେନ୍ ଗମ୍ଭୀର ହୋଇ କହିଲେ ।

"ବାବୁ! ତମର ଏ କଥାକୁ ମୁଁ ବାହାଦୁରୀ ବୋଲି ଭାବୁ ନାହିଁ । ତମର ଏହା ବାହାଦୁରୀ ହୋଇଥିଲେ ବି ଏଥିରେ କାହାର କ୍ଷତି ହେବ ନାହିଁ । ଯଦି ସମାଜରେ ଜଣାଶୁଣା ଲୋକେ ବାହାଦୁରୀ ଦେଖାଇବେ ଏବଂ ସେମାନଙ୍କର ସେ ଗର୍ବ ଔଦ୍ଧତ୍ୟରେ ପରିଣତ ହୋଇ ଅନ୍ୟର ଅନିଷ୍ଟ କରିବାର ସମ୍ଭାବନା





ଥିବ, ତେବେ ମୁଁ ସେମାନଙ୍କୁ ସାମ୍ନା କରିବାକୁ ପ୍ରସ୍ତୁତ।" ସୁବୀର ଧୀର ସ୍ୱରରେ କହିଲା।

ସୁରସେନ୍ ସେଇଠୁ ନିଜର ପରିଚୟ ଦେଲେ ଓ ଜଣାଇଦେଲେ ଯେ ସେ ସାଧାରଣ ଲୋକ ନୁହନ୍ତି। ସଙ୍ଗେ ସଙ୍ଗେ ସେ ବାହାଦୁରି ଦେଖାଇବାର ଅଭିନୟ ବି କଲେ।

ସେଇଠୁ ସୁବୀର ତାଙ୍କ ଆହ୍ୱାନ ଗ୍ରହଣ କଲା। ଦ୍ୱନ୍ଦ୍ୱ ଯୁଦ୍ଧ ହେଲା। ସୁବୀର ଅକ୍ଲେଶରେ ରାଜକୁମାରଙ୍କୁ ହରାଇଦେଲା।

ତା'ପରେ ଦୁଇଜଣଙ୍କ ଭିତରେ ତରବାରିରେ ଯୁଦ୍ଧ ହେଲା। ସେଥିରେ ବି ସୁବୀର ସୁରସେନଙ୍କୁ ପରାସ୍ତ କଲା।

ସୁରସେନ୍ କହିଲେ, "ଶୁଣ ମୁଁ ଏବେ ବି କହୁଛି, ତମେ ଯଦି ରାଜଧାନୀକୁ ଆସିବ, ମୁଁ ତମକୁ ହରାଇ ଦେବି।"

ଅଗତ୍ୟା ସୁବୀର ରାଜଧାନୀକୁ ଗଲେ। ସେଠାରେ ସୁରସେନ୍ ରାଜ୍ୟର ଅନ୍ୟାନ୍ୟ ବୀରମାନଙ୍କ ସହ ସୁବୀରଙ୍କ ଦ୍ୱନ୍ଦ୍ୱ ଯୁଦ୍ଧର ବ୍ୟବସ୍ଥା କଲେ। ଅନେକ ଦର୍ଶକ ସେଠାରେ ସମବେତ ହେଲେ। ସୁବୀର ସମସ୍ତଙ୍କୁ ପରାସ୍ତ କଲେ।

ସବା ଶେଷରେ ସୁବୀରଙ୍କ ସହ ସୁରସେନ ଲଢ଼ିଲେ। ଦର୍ଶକମାନେ ଧନ୍ୟ ଧନ୍ୟ କଲେ। ଉଭୟଙ୍କ ଦକ୍ଷତାର ସମସ୍ତେ ଭୂରି ଭୂରି ପ୍ରଶଂସା କଲେ। କିନ୍ତୁ ବିଚାରକ ମଣ୍ଡଳୀଙ୍କ ମତରେ ରାଜକୁମାରହିଁ ଉଭୟଙ୍କ ଭିତରେ ଥିଲେ ଅପେକ୍ଷାକୃତ ଦକ୍ଷ।

ଦ୍ୱନ୍ଦ୍ୱ ଯୁଦ୍ଧ ଶେଷ ହେଲା। ସୁବୀରଙ୍କୁ ବିଦାୟ ଦେବା ଅବସରରେ ସୁରସେନ କହିଲେ, "ବନ୍ଧୁ! ତୁମେ ମୋଠାରୁ ବହୁତ ବଡ଼ ବୀର ବୋଲି ମୁଁ ଜାଣିଥିଲି ଓ ବର୍ତ୍ତମାନ ବି ଜାଣେ। ଏଠାରେ ଯେଉଁ ଫଳାଫଳ ଘୋଷଣା ହେଲା, ତା'ର ଅର୍ଥ ଅଲଗା। ତମେ ବୁଝୁଛ ନିଶ୍ଚୟ!"

ସୁବୀର ସ୍ମିତ ହସ ହସି ବିଦାୟ ନେଇ ଚାଲିଗଲେ।

ବେତାଳ କାହାଣୀଟି ଏଇଠାରେ ଶେଷ କରି ଆହ୍ୱାନ ଦେବା ଭଙ୍ଗୀରେ ପ୍ରଶ୍ନ କଲା,





"କୁହ ରାଜା, ସୁବୀର ଯଦି ବାସ୍ତବିକ ସୁରସେନ୍‌ଙ୍କଠାରୁ ବଡ଼ ବୀର, ତେବେ ସେ ପରାସ୍ତ ହେଲା କପରି? ସୁରସେନ୍ ଯାହା କହିଲେ, ତା' ଅର୍ଥ କ'ଣ ସେ କୌଣସି ଚତୁରତାର ଆଶ୍ରୟ ନେଇ ସୁବୀରଙ୍କୁ ପରାସ୍ତ କଲେ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ। ଉତ୍ତର ଦେବାର ଶକ୍ତିଥିବା ସତ୍ତ୍ୱେ ଯଦି ନିରୁତ୍ତର ରହିବ, ତେବେ ତୁମ ଶିର ହେବ ସ୍କନ୍ଧଚ୍ୟୁତ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ଯେପରି ଜଳ ବାହାରକୁ ଆସିଲେ ବିଶାଳ ତିମିମାଛ ବି ଶକ୍ତିହୀନ ହୋଇପଡ଼େ, ସେହିପରି ସୁବୀର ତା'ର ପରିବେଶ ଛାଡ଼ି ରାଜଧାନୀକୁ ଆସି ନିଶ୍ଚୟ ଚମକି ଯାଇଥିବ। ସେ ତାଲିମପ୍ରାପ୍ତ ଯୋଦ୍ଧା ନଥିଲା। ଯେପରି ବାଘ ଛୁଆକୁ କେହି ଶିକାର୍ ଶିଖାଏ ନାହିଁ, ସେ ବଳେ ବଳେ ଶିଖିଯାଏ, ସେହିପରି ସୁବୀରର ବୀରତ୍ୱ ଥିଲା ପ୍ରାକୃତିକ। ଦ୍ୱିତୀୟରେ ଆମେ ଭୁଲିଗଲେ ଚଳିବ ନାହିଁ ଯେ ପ୍ରଥମେ ସୁବୀର ଅନେକଙ୍କ ସହ ଲଢ଼ି ତା'ପରେ ଯାଇ ସୁରସେନ୍‌ଙ୍କ ସହ ଲଢ଼ିଲା। ଫଳରେ ସେ ସାମାନ୍ୟ ହାଲିଆ ହୋଇ ଯାଇଥିବ ନିଶ୍ଚୟ। ତୃତୀୟରେ ରାଜଧାନୀରେ ସୁବୀରକୁ କେହି ଜାଣନ୍ତି ନାହିଁ। ସୁରସେନ୍ ବୀର ଓ ଦକ୍ଷ ଯୋଦ୍ଧା ବୋଲି ସମସ୍ତେ ଜାଣନ୍ତି। ଫଳରେ ସମସ୍ତେ ମୂଳରୁ ଧରି ନେଇଥିଲେ ଯେ ରାଜକୁମାର ଜିତିବେ। ଲୋକଙ୍କ ଧାରଣା ଅନୁସାରେ ସେମାନଙ୍କ ବିଚାର ପ୍ରଭାବିତ ହୁଏ। ଫଳରେ ସେମାନେ ସୁବୀର ଅପେକ୍ଷା ସୁରସେନ୍‌ଙ୍କ ଦକ୍ଷତା ବେଶି ବୋଲି ଲକ୍ଷ୍ୟ କରିଥିବେ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସି ଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା।

(କଳ୍ପିତ)



# ଲାଭ-ଚାରି ହଜାର!

ଆନନ୍ଦ ସେ ଅଞ୍ଚଳରେ ଜୁଆଖୋର୍ ହିସାବରେ ଜଣାଶୁଣା । ପ୍ରାୟ ପ୍ରତିଦିନ ଜୁଆଖେଳରେ ସେ ହାରିଯାଏ । ସବୁ ପଇସାପତ୍ର ସେଇଥିରେ ଯାଏ, ତଥାପି ଜୁଆ ନିଶାରୁ ସେ ନିଜକୁ ଅଲଗା କରି ପାରେନାହିଁ ।

"ଆଜି କ'ଣ ଭାରି ଖୁସ୍ ମିଜାଜ୍‌ରେ ଅଛ ! ଦୁଇ ଚାରିଟଙ୍କା ଜୁଆରେ ଜିତିଗଲ କି ?" ତା' ସ୍ତ୍ରୀ ପଚାରିଲା । କାରଣ ସେ ବେଶ୍ ପ୍ରସନ୍ନ ଦିଶୁଥିଲା ।

"ଦୁଇ ଚାରି ଟଙ୍କା ? ଚାରିହଜାର ଲାଭ ହୋଇଛି !" ଆନନ୍ଦ ଉତ୍ତର ଦେଲା ।

"ଚାରିହଜାର ? କାହିଁ, ଦେଖାଇଲ !" ସ୍ତ୍ରୀ ଆଶ୍ଚର୍ଯ୍ୟ ହୋଇ କହିଲା ।

"ଆରେ, ଲାଭ ମାନେ କ'ଣ ଟଙ୍କା ପାଖରେ ଥିବାକୁ ବାଧ୍ୟ ? କଥା ହେଲା, ମୁଁ ପାଞ୍ଚହଜାର ଟଙ୍କା ହାରିଗଲି । ମୋଠି ତ ଟଙ୍କା ନଥିଲା, ସେମାନେ ମୋଠୁଁ ନେବେ କ'ଣ ? ଅଗତ୍ୟା ମୋ ହୀରା ମୁଦିଟି ନେଇ ମୋତେ ଛାଡିଦେଲେ । ସେ ହୀରା ମୁଦିର ଦାମ ହଜାରେ । ଯଦି ସେତିକି ଦେଇ ପାଞ୍ଚହଜାରରୁ ଛୁଟି ମିଳିଲା, ତେବେ ଲାଭ ଚାରିହଜାର ହେଲା ନାହିଁ ?" ବୁଝାଇ ଦେଲା ଆନନ୍ଦ । ତା' ସ୍ତ୍ରୀ ଦୀର୍ଘନିଃଶ୍ୱାସ ପକାଇଲା ।





# ମିଥାବାଦୀ ସତ୍ୟବାଦୀ

ସୋମପୁର ରାଜ୍ୟର ଦକ୍ଷିଣ ପ୍ରାନ୍ତରେ ଥିଲା ଗୋଟିଏ ବିସ୍ତୃତ ଘନ ଜଙ୍ଗଲ । କାହିଁ କେତେ କାଳରୁ ସେ ଜଙ୍ଗଲ ରାଜ୍ୟର ପ୍ରାକୃତିକ ଜଳବାୟୁକୁ ପ୍ରଭାବିତ କରି ଆସୁଥିଲା । ଜଙ୍ଗଲ ଯୋଗୁଁ ଭଲ ବର୍ଷା ହେଉଥିଲା । ଫଳରେ ଲୋକେ ଭଲ ଫସଲ ଉପୁଜାଇ ପାରୁଥିଲେ । ପୁରୁଷ ପୁରୁଷ ଧରି ଜଙ୍ଗଲଟି ଏହିପରି ଭାବରେ ରାଜ୍ୟର ହିତ କରି ଆସୁଥାଏ ।

ରାଜା ଚନ୍ଦ୍ରବର୍ମାଙ୍କ ରାଜୁତି ବେଳକୁ କିନ୍ତୁ ସେ ଜଙ୍ଗଲ ପତଳା ହୋଇ ଆସୁଥିବାର ଦେଖାଗଲା । କଥା କ'ଣ କି ଗୃରପାଖରେ ଜନବସତି ବଢ଼ି ଯାଇଥିଲା । ଲୋକେ ଖାଲି ଯେ ଜାଳେଣି ପାଇଁ ଜଙ୍ଗଲରୁ ଗଛ କାଟି ନେଉଥିଲେ, ତାହା ନୁହେଁ, ଘରଦ୍ୱାର ଗଠନ କାମରେ ଲଗିବା ପାଇଁ ମଧ୍ୟ ଦୈନିକ ବଡ଼ ବଡ଼ ଗଛ କାଟିବାରେ ଲାଗିଥିଲେ । କେହି ନିଜେ ଗଛଟିଏ ନ ଲଗାଇ ପ୍ରକୃତି ଯାହା ଦେଇଛି, ତାହାକୁ ନିପାତ କରୁଥିଲେ ।

ରାଜା ସେ ଜଙ୍ଗଲରୁ ତେଣିକି ଗଛ କାଟିବା ବେଆଇନ୍ ବୋଲି ଘୋଷଣା କରିଦେଲେ । ରାଜା ସିନା ଆଇନ୍ କରିଦେଲେ, କିନ୍ତୁ ଗାଁଗଣ୍ଡାର ଲୋକେ ସେକଥା ଉପରେ ବିଶେଷ ଗୁରୁତ୍ୱ ଦେଲେନାହିଁ । ସେମାନେ ପୂର୍ବଭଳି କାଠ କାଟିବାକୁ ଲାଗିଲେ । ସେ କଥା ରାଜାଙ୍କ କାନରେ ପଡିଲା । କେହି ଆଇନ୍‌ର ଖିଲାପ୍ କଲେ ତାକୁ ଧରିବା ନିମନ୍ତେ ଜଣେ ବନରକ୍ଷୀ ନିଯୁକ୍ତ କଲେ ।

ଦିନେ ବନରକ୍ଷୀ ଜଣେ ଯୁବକ ଗଛ କାଟୁଥିବାର ଦେଖି ପାଖକୁ ଆସି ଧମକ ଦେଇ କହିଲେ, "ଏ ଜଙ୍ଗଲରୁ ଗଛ କାଟିବା ବେଆଇନ୍ ବୋଲି ତମକୁ ମାଲୁମ୍ ନାହିଁ ?"








"ନାଁ ବାବୁ, ମୁଁ ସେଭଳି କଥା ଶୁଣି ନାହିଁ।" ଯୁବକଟି ଆଶ୍ଚର୍ଯ୍ୟ ହୋଇ କହିଲା।

"ଶୁଣିଥାଅ ବା ନ ଶୁଣିଥାଅ। ତମେ ଆଇନ୍ ଭାଙ୍ଗିଛ। ଦଣ୍ଡ ପାଇବାକୁ ପଡ଼ିବ।" ବନରକ୍ଷୀ କହିଲେ।

"ବାବୁ, ଆଉ ଖଣ୍ଡେ ଦୂରରେ ତ ପାଞ୍ଚଜଣ ଲୋକ ଗଛ କାଟୁଛନ୍ତି!" ଯୁବକ କହିଲା।

ବାନରକ୍ଷୀ ତା' କଥା ଶୁଣି ମଧ୍ୟ ପ୍ରଥମେ ନ ଶୁଣିବା ଭଳି ଭାବ ଦେଖାଇଲେ ଓ ଯୁବକକୁ ଧରି ନେଇଯିବେ ବୋଲି ପୁଣି ଧମକ ଦେଲେ।

"ମୋତେ ଯଦି ଧରି ନେଇଯିବେ ତ ନିଅନ୍ତୁ। କିନ୍ତୁ ଅନ୍ୟ ପାଞ୍ଚଜଣଙ୍କୁ ବି ମୋ ସାଥିରେ ନେଇଯିବେଟି?" ଯୁବକ ପଚାରିଲା।

"ସେମାନେ ସେପାଇଁ ମୋତେ ଦୈନିକ ଟଙ୍କାଏ କରି ଦେଉଛନ୍ତି! ତମେ ଯଦି ଦେବାକୁ ପ୍ରସ୍ତୁତ, ତେବେ କାଟି ପାର!" ବନରକ୍ଷୀ କହିଲେ।

ଯୁବକ ଭାବିଲା ସେଇଟା ବୋଧହୁଏ ରାଜାଙ୍କ ନିୟମ। ସେ କହିଲା, "ବାବୁ, ସେଇକଥା କହୁନାହାନ୍ତି? ମୋତେ ଅଯଥାରେ ଭୟ ଦେଖାଉଛନ୍ତି କାହିଁକି? ଯାହା ସମସ୍ତେ କରିବେ ମୁଁ ତାହା ନକରିବି କାହିଁକି?"

ଯୁବକ ଦୈନିକ ଟଙ୍କାଏ ଲେଖାଏଁ ଦେଇ ତେଣିକି କାଠ କାଟିଲା। ଦଶଦିନ ପରେ ଦିନେ ବନରକ୍ଷୀ କହିଲେ, "ଏଣିକି ଦୁଇଟଙ୍କା ଦେବାକୁ ପଡ଼ିବ!"

"ବାବୁ, ଦୁଇଟଙ୍କାହିଁ ମୋର ଦୈନିକ ହାରାହାରି ଲାଭ ହୁଏ। ତମକୁ ଦୁଇଟଙ୍କା ଦେଲେ ମୁଁ କ'ଣ ନେଇ ଚଳିବି?" ଯୁବକ ବୁଝାଇ କହିଲା।

"ତୁ ନ ଚଳିଲେ କାହାର କ'ଣ ହୋଇଯିବ? ଚାଲ ରାଜାଙ୍କ ପାଖକୁ!" ବନରକ୍ଷୀ ଧମକ ଦେଲେ।

"ହଉ, ଚାଲନ୍ତୁ!"

ଯୁବକ ସଙ୍ଗେ ସଙ୍ଗେ ରାଜାଙ୍କ ପାଖକୁ ଯିବାକୁ ରାଜି ହୋଇଯିବ ବୋଲି ବନରକ୍ଷୀ କଳ୍ପନା କରି ନଥିଲେ। ବର୍ତ୍ତମାନ ଯୁବକକୁ

ଧରି ଦରବାରକୁ ଯିବା ଛଡ଼ା ଅନ୍ୟ ଉପାୟ ନଥିଲା ।

ବାଟରେ ବନରକ୍ଷୀ କହିଲେ, "ଆଜି ଥରେ ଭାବ ଦେଖ, ରାଜା ତୋତେ କାରାଦଣ୍ଡ ଦେଇ ପାରନ୍ତି । ବରଂ ମୋ କଥା ଶୁଣି କାମ କର ।"

"ଯେତେବେଳେ ବାହାରି ଆସିଲୁଣି, ସେତେବେଳେ ଥରେ ରାଜଦର୍ଶନ ହୋଇଯାଉ!" ଯୁବକ କହିଲା । ସେ ବନରକ୍ଷୀ ବିଷୟରେ ବର୍ତ୍ତମାନ ସନ୍ଦିହାନ ହୋଇ ଉଠିଥିଲା ।

ଦୁହେଁ ଯାଇ ରାଜାଙ୍କୁ ଅଭିବାଦନ କରି ଠିଆ ହେଲେ ।

ରାଜାଙ୍କ ଆଗରେ ବନରକ୍ଷୀ କହିଲେ, "ପ୍ରଭୁ! ଏ ଟୋକା ବେଆଇନ୍ ଭାବରେ ଗଛ କାଟୁଥିଲା!"

ଯୁବକ ସଙ୍ଗେ ସଙ୍ଗେ କହିଲା, "ମହାରାଜ! ଆଜି ପ୍ରଥମଥର ପାଇଁ ଏ କାମ କରୁଥିଲି । ଆପଣ କ'ଣ କ୍ଷମା କରିବେ ନାହିଁ?"

"ଚୋପ୍, ମିଥ୍ୟାବାଦୀ! ପ୍ରଥମଥର? ପନ୍ଦରଦିନ ହେଲା ତୁ ଗଛ କାଟୁଛୁ!" ବନରକ୍ଷୀ ଉତ୍ତେଜିତ ହୋଇ କହିଲେ ।

ଯୁବକଟି ହସିଲା ଓ ରାଜାଙ୍କୁ କହିଲା, "ମହାରାଜ! ଏ ସତ୍ୟବାଦୀଙ୍କୁ ପଚାରନ୍ତୁ, ସେ ପନ୍ଦରଦିନ ହେଲା ମୋତେ ନ ଧରି ଆଜି କାହିଁକି ଧରିଲେ!"

ରାଜା ସନ୍ଦିଗ୍ଧ ଭାବରେ ବନରକ୍ଷୀ ମୁହଁକୁ ଅନାଇଲେ । କର୍ମଚାରୀଟିର ମୁହଁର ଭାବ ଦେଖି ତାଙ୍କର ସନ୍ଦେହ ହେଲା । ସେ ସଙ୍ଗେ ସଙ୍ଗେ ଦଳେ ସୈନିକ ବଣକୁ ପଠାଇଦେଲେ । ସେଠାରେ ଗଛ କାଟୁଥିବା 'ଆଉ ଆଠ ଦଶ ଲୋକ ଧରା ହୋଇ ଆସିଲେ । ସେମାନେ ସମସ୍ତେ ବନରକ୍ଷୀକୁ ଟଙ୍କା ଦେଇ ଗଛ କାଟୁଥିବା ସ୍ୱୀକାର କଲେ ।

ରାଜା ବନରକ୍ଷୀଙ୍କୁ କାରାଗାରକୁ ପଠାଇଲେ ଓ ସେହି ଯୁବକକୁ ବନରକ୍ଷୀ ପଦରେ ରଖାଇଲେ ।



# ଉଦାହରଣ !

ଯୋଗାନନ୍ଦ ନାମକ ଗୁରୁଙ୍କ ପାଖରେ ଦଳେ ଯୁବକ ରହି ଶାସ୍ତ୍ର ଶିକ୍ଷା କରୁଥିଲେ । ସେମାନଙ୍କ ଭିତରେ ସୁନ୍ଦର ବୋଲି ଜଣେ ଶିଷ୍ୟ ଭୀଷଣ ବଦରାଗୀ ଥିଲା । କଥାକେ କଥାକେ ସେ ଯେ ଖାଲି ସହପାଠୀମାନଙ୍କ ଉପରେ ରାଗି ଯାଉଥାଏ, ସେତିକି ନୁହେଁ, ହାତ ବି ଚଳେଇ ଦେଉଥାଏ । ସେ ଅନ୍ୟମାନଙ୍କ ତୁଳନାରେ ବହୁତ ବଳୁଆ ଥିଲା । ତେଣୁ କେହି ଗୁରୁଙ୍କ ପାଖରେ ଅଭିଯୋଗ ବି କରୁ ନଥା'ନ୍ତି, ତାକୁ ଏଡ଼ାଇ ଚାଲୁଥାନ୍ତି ।

ଗୁରୁଙ୍କୁ ତା' ବ୍ୟବହାର ଜଣା ନାହିଁ, ଏଥିପାଇଁ ଯୋଗାନନ୍ଦ ବେଶ୍ ଖୁସିଥାଏ ।

ଦିନେ ଗୁରୁ ପାଠ ପଢ଼ାଇଲା ବେଳେ କହିଲେ, "ଯାହାର ଚେତନା ଉଚ୍ଚ, ସେ ହଇରାଣ ହେଲେ ବି ନିମ୍ନ ଚେତନାର ବ୍ୟକ୍ତି ଭଳି କାମ କରିପାରେ ନାହିଁ । ଯେ ତା ଯୋଗୁଁ ତମ ଗୋଡ଼ ଚିରିଗଲେ ତମେ କ'ଣ ଘୋଡାକୁ ଚିରି ପକାଅ ? ନା । କମ୍ବା କୁକୁର ଭୁକିଲେ କ'ଣ ତମେ ଭୁକିବ ? ନା । ତମେ ତାକୁ ଏଡ଼ାଇ ଚାଲିଯିବ । କେମିତି ଏଡ଼ାଇବ ?"

ଗୁରୁ ମୁହୂର୍ତ୍ତେ ଅପେକ୍ଷା କଲେ । କେହି କିଛି ନ କହିବାରୁ କହିଲେ, "ଆରେ, ଗୋଟାଏ ବି ଦୃଷ୍ଟାନ୍ତ ଦେଇ ପାରୁନାହଁ ? ତମେମାନେ ଆମ ସୁନ୍ଦରକୁ କପରି ଏଡ଼ାଇ ଚଳ !"

ସୁନ୍ଦରର ମୁହଁ ଲାଲ ପଡ଼ିଗଲା । ସେହି ଦିନରୁ ତା' ବ୍ୟବହାରରେ ପରିବର୍ତ୍ତନ ହେବାକୁ ଲାଗିଲା । ସେ ଆଉ କାହାର ଆଡ଼େ ଖେପି ଯାଏ ନାହିଁ ।






# ଛାଗଳ ହସିଲା!

ଏକଦା କାଶୀ ନଗରୀର ଅଦୂରରେ ଗୋଟିଏ ବଣ ଥିଲା । ବଣ ଭିତରେ ଥିବା ପାହାଡ଼ଟିଏ ଉପରେ ବୋଧିସତ୍ତ୍ୱ ସେଥର ଗୋଟିଏ ବୃକ୍ଷ ରୂପରେ ଜନ୍ମ ଗ୍ରହଣ କରିଥାନ୍ତି । ବଣର ଆଖପାଖର ବାସିନ୍ଦା, ଏପରିକି ପଶୁପକ୍ଷୀଙ୍କ ଗତିବିଧି ସେ ଲକ୍ଷ୍ୟ କରି ଦେଖୁଥାନ୍ତି ।

ପାହାଡ଼ ତଳେ ଗୋଟିଏ ଗୁରୁକୁଳ ଥିଲା । ଜଣେ ପଣ୍ଡିତ ସେଠାରେ ସମବେତ ଛାତ୍ର-ମାନଙ୍କୁ ବିଦ୍ୟାଦାନ କରୁଥାନ୍ତି । ପଣ୍ଡିତଙ୍କ ସହ ତାଙ୍କ ଶିଷ୍ୟମାନେ ଛୋଟ ଛୋଟ କୁଡ଼ିଆରେ ରହୁଥାନ୍ତି । ସେଠାକାର ପରିବେଶ ଥିଲା ଅତ୍ୟନ୍ତ ମନୋରମ । ଦିନ ବେଶ୍ ଭଲରେ କଟୁଥାଏ ।

ଥରେ ପଣ୍ଡିତ କୌଣସି ଅପକାର୍ଯ୍ୟ କରିଥିବା ହେତୁ ନିଜେ ପ୍ରାୟଶ୍ଚିତ୍ତ କରିବାକୁ ମନସ୍ଥ କଲେ । ସେଥିପାଇଁ ଗୋଟାଏ ବୋଦା ବଳିଦେବା ଦରକାର ପଡ଼ିଲା । ସେ ଯାଇ ପାର୍ଶ୍ୱବର୍ତ୍ତୀ ଗ୍ରାମର ଜଣେ ଧନୀ ଭଦ୍ରଲୋକଙ୍କୁ ସେକଥା କହିବାରୁ ସେ ସଙ୍ଗେ ସଙ୍ଗେ ପଣ୍ଡିତଙ୍କୁ ବୋଦାଟାଏ ଉପହାର ଦେଲେ ।

ପଣ୍ଡିତ ଛେଳିକୁ ଧରି ଗୁରୁକୁଳକୁ ଫେରିଲେ ଓ ନିଜର ଦୁଇଜଣ ଶିଷ୍ୟଙ୍କୁ କହିଲେ, "ଏହାକୁ ନେଇଯାଇ ନଈରେ ସ୍ନାନ କରାଇ ତା'ପରେ ଏହା ବେକରେ ଗୋଟାଏ ଫୁଲମାଳ ପକାଇ ନେଇ ଆସ । ତେଣିକି ଏହାକୁ ବଳି ପକାଇବା ।"

ଶିଷ୍ୟ ଦୁଇଜଣ ବୋଦାକୁ ଧରି ନଈକୁ ଗଲେ । ତାକୁ ଯଥାବିଧି ସ୍ନାନ କରାଇ କୂଳକୁ ଆଣିଲେ । ସେତେବେଳକୁ ମେଘ ଉଠାଇଥାଏ ଓ ବର୍ଷା ହେବା ଉପରେ । ସେମାନେ ତରତରରେ ଗୋଟାଏ ଫୁଲମାଳ



ପ୍ରସ୍ତୁତ କରି ବୋଦା ବେକରେ ଲମ୍ବାଇ ଦେଲେ ।

ହଠାତ୍ ବୋଦାଟି ମଣିଷ ଭଳି ହସିଲା । ପ୍ରଥମେ ଶିଷ୍ୟ ଦୁଇଜଣ କିଏ ହସୁଛି ବୋଲି ବୁଝି ନପାରି ଏଆଡ଼େ ସେଆଡ଼େ ଅନାଇଲେ । କିନ୍ତୁ ଆଖପାଖରେ ଜଣେ ବି ମଣିଷ ନଥିଲେ । ସେମାନେ ବୋଦା ଆଡ଼େ ଲକ୍ଷ୍ୟ କରି ଦେଖିଲେ, ସେ ପର୍ଯ୍ୟନ୍ତ ସେ ହସୁଛି! ଶିଷ୍ୟ ଦୁଇଟିଙ୍କ ଛାନିଆ କଥା କହିଲେ ନ ସରେ । ସେମାନେ ବୋଦାକୁ ସେଇଠାରେ ଛାଡ଼ି ଦେଇ ପଳାଇ ଯିବାକୁ ମନ କଲେ । କିନ୍ତୁ ପୁଣି ଦେଖିବା ବେଳକୁ ବୋଦା କାନ୍ଦୁଛି ।

"କ'ଣ କରିବା?" ଜଣେ ପଚାରିଲା ।

"ଗୁରୁ ଯାହା କରିବେ!" ଅନ୍ୟ ଜଣକ କହିଲା ।

ସେମାନେ ସାହସ ସଞ୍ଚୟ କରି ବୋଦାକୁ ଧରି ଗୁରୁଙ୍କ ପାଖକୁ ଲେଉଟି ଆସିଲେ ଓ କହିଲେ, "ଗୁରୁଦେବ! ଏହା ଉପରେ ନିଶ୍ଚୟ ଭୂତ ସବାର୍ ହୋଇଛି । ନ ହେଲେ ଇଏ ମଣିଷ ଭଳି ହସନ୍ତା କାନ୍ଦନ୍ତା?" ଏହାପରେ ସେମାନେ ସେମାନଙ୍କ ଅଭିଜ୍ଞତା ବର୍ଣ୍ଣନା କଲେ ।

ଗୁରୁ ଚିନ୍ତିତ ହୋଇ କହିଲେ, "ତେବେ ଏ ବୋଦା ବଳିର ଯୋଗ୍ୟ ନୁହେଁ । ଏହାକୁ ଛାଡ଼ି ଦେବା । ପୁଣି କାହା ପାଖକୁ ଯାଇ ଆଉ ଗୋଟାଏ ଛେଳି ସଂଗ୍ରହ କରିବ, ତାହାହିଁ ଚନ୍ତା ।"

"ମୁଁ ବଳିର ଯୋଗ୍ୟ ନୁହେଁ ବୋଲି ତମେ ସିଦ୍ଧାନ୍ତ କଲ କାହିଁକି? ହସିଲି ଓ କାନ୍ଦିଲି ବୋଲି?" ଛେଳି ପ୍ରଶ୍ନ କଲା ।

ଛେଳି ଠିକ୍ ମଣିଷ ଭଳି କଥା କହିବାର ଶୁଣି ଗୁରୁଙ୍କ ସମେତ ଦୁଇ ଶିଷ୍ୟଙ୍କର ମୂର୍ଚ୍ଛା ଗଲାଭଳି ଅବସ୍ଥା ହେଲା । ତେବେ ସେମାନେ କୌଣସି ମତେ ସମ୍ଭାଳି ଗଲେ ।

ତା'ପରେ ତିନିଜଣଯାକ ପରସ୍ପର ଆଡ଼େ ଅନାଇ ଦମ୍ଭ ସଞ୍ଚୟ କଲେ ।

"ତମ ହସ କାନ୍ଦ କଥା ଥାଉ, ତମେ ମଣିଷ ଭଳି କଥା କହୁଛ କିପରି?" ପଣ୍ଡିତ ପଚାରିଲେ ।



"କାହିଁକି କହିବ ନାହିଁ? ମୁଁ ଏକଦା ତମରି ଭଳି ମଣିଷ ଥିଲି। ପୁଣି ପଣ୍ଡିତ ବି ଥିଲି। କଥା କହିବା ଅଭ୍ୟାସଟି ରହିଯାଇଛି।" ଛେଳି ଉତ୍ତର ଦେଲା।

"ତମେ ମଣିଷ ଥିଲି। ପୁଣି ପଣ୍ଡିତ ବି ଥିଲି। ତମର ଏ ଦଶା ହେଲା କିପରି?" ପଣ୍ଡିତ ଅଦମ୍ୟ କୌତୁହଳରେ ପଚାରିଲେ।

"ସେସବୁ ଶୁଣିବା କ'ଣ ଦରକାର? ତମେ ମୋତେ ବଳିଦେବା ନିମନ୍ତେ ଆଣିଛ। ବଳି ଦିଅ। ମୋର ଏତିକି କହିବାର କଥା ଯେ ମୁଁ ବଳି ସକାଶେ ଅଯୋଗ୍ୟ ନୁହେଁ।" ଛେଳି କହିଲା।

"ହଉ, ବୁଝିବା। ଆଗେ ତେବେ କୁହ, ତମେ ନିଇ ଭୁଠରେ ହସିଲ କାହିଁକି!" ପଣ୍ଡିତ ପଚାରିଲେ।

"ସେକଥା କହିବାକୁ ହେଲେ ସବୁ କହିବାକୁ ହେବ। ମୁଁ ମଣିଷ ଥିବା ବେଳେ ଗୋଟାଏ ଶାସ୍ତ୍ର ବିରୋଧୀ କାମ କଲି। ସେ ପାପର ପ୍ରାୟଶ୍ଚିତ୍ତ କରିବାକୁ ଯାଇ ଗୋଟାଏ ଛେଳି ବଳି ଦେଲି। ସେତେବେଳେ ମୁଁ ଜାଣି ନଥିଲି ଯେ ଗୋଟାଏ ପାପର ପ୍ରାୟଶ୍ଚିତ୍ତ କରିବାକୁ ଯାଇ ମୁଁ ଆଉ ଗୋଟାଏ ପାପ କରୁଛି! 'ଛେଳି ବଳି ଦେଇଥିବା ହେତୁ ମୁଁ ପାଞ୍ଚଶହଥର ଛେଳି ଜନ୍ମ ପାଇବା କଥା। ସେଥିରୁ ଚାରିଶହ ଅନେଶତଥର ସରିଲାଣି। ଆଜି ତମେ ବଳି ଦେଲେ ପାଞ୍ଚଶହ ଛେଳି ଜନ୍ମ ଶେଷ ହେବ। ତେଣିକି ମୁଁ ମଣିଷ ହେବି। ସେଇକଥା ଭାବି ଆନନ୍ଦରେ ହସି ଉଠିଥିଲି।" ଛେଳି କହିଲା।

"ହୁଁ! ଆଚ୍ଛା, କାନ୍ଦିଲ କାହିଁକି?" ପଣ୍ଡିତ ପଚାରିଲେ।

"ଆହେ ବାବୁ, ତମର ଏତେ କଥାରେ ଅଛି କ'ଣ? ମୋତେ ବଳି ଦେଉନା କାହିଁକି?" ଛେଳି ବ୍ୟଗ୍ର ହୋଇ ପଚାରିଲା।

"ନା, ନା, ପ୍ରଥମେ ମୋ ପ୍ରଶ୍ନର ଉତ୍ତର ଦିଅ।" ପଣ୍ଡିତ ଜିଦ୍‌ଧରି କଲେ।

"ସତକଥା କହିବାକୁ ଗଲେ, ତମପାଇଁ କାନ୍ଦିଲି। ତମେ ଏଥର ମଲେ ପାଞ୍ଚଶହଥର ଛେଳି ଜନ୍ମ ପାଇବ।" ଛେଳି ଜଣାଇଲା।

ପଣ୍ଡିତ ସ୍ତବ୍ଧ ହୋଇ ରହିଲେ । ତା'ପରେ କହିଲେ, "ବୋଦା ! ତମକୁ ବଳି ଦେବାର ପ୍ରଶ୍ନ ଉଠୁଛି କେଉଁଠୁ ? ଜାଣି ଜାଣି ମୁଁ ପାଞ୍ଚଶହ ଥର ଛେଳି ଜନ୍ମ ପାଇବି କାହିଁକି ? ତମେ ମୋ ଆଖି ଖୋଲିଦେଲ । ତମକୁ ଅଶେଷ ଧନ୍ୟବାଦ । ତମେ ଏଇଠି ରୁହ । ଆମେ ଖାଇବାକୁ ପିଇବାକୁ ଦେବୁଁ ।"

ବୋଦା ପୁଣି ହସିଲା ଓ କହିଲା, "ପଣ୍ଡିତେ, ତମେ ମୋତେ ନ ମାରିଲେ ବି ଆଜି ମୋର ମୃତ୍ୟୁଯୋଗ ଅଛି । ତାକୁ କେହି ଏଡ଼ାଇ ପାରିବେ ନାହିଁ । ହଉ, ମୋତେ ଯଦି ନ ମାରିବ, ମୁଁ ଯାଉଛି ।"

ଏହା କହି ଛେଳି ଗୁରୁକୁଳ ବାହାରକୁ ଚାଲିଗଲା । କୌତୂହଳୀ ହୋଇ ପଣ୍ଡିତ ଓ ଶିଷ୍ୟମାନେ ତା' ପଛେ ପଛେ ଗଲେ । ପଣ୍ଡିତ ପୁଣି କହିଲେ, "ତମେ କଥା ଶୁଣ । ଏଇଠି ରୁହ । ତମକୁ କେହି ମାରି ପାରିବେ ନାହିଁ ।"

ଛେଳି ବୁଲିପଡ଼ି କହିଲା, "ତମେ ଭାବୁଛ ମୁଁ ମରିବାକୁ ଡରୁଛି ! ପଣ୍ଡିତେ ! ମୁଁ ତ ମରିବା ପାଇଁ ବାଟ ଚାହିଁ ବସିଛି !"

ଏହା କହି ବୋଦା କ୍ଷିପ୍ର ଗତିରେ ପାହାଡ଼ ଚଢ଼ି ଗଲା । ପଣ୍ଡିତ ତାକୁ ଆଉ ଅଟକାଇ ପାରିଲେ ନାହିଁ, ଖାଲି ଚାହିଁ ରହିଲେ । ସେତେବେଳକୁ ପ୍ରବଳ ମେଘ ଘୋଟି ଆସିଲାଣି । ଚାହୁଁ ଚାହୁଁ କର୍ଣ୍ଣପଟ ବିଦୀର୍ଣ୍ଣ କରି ପାହାଡ଼ ଉପରେ ଗୋଟାଏ ବଜ୍ର ପଡ଼ିଲା । ପଣ୍ଡିତେ ଓ ଶିଷ୍ୟମାନେ ଅନାଇଥାନ୍ତି, ସେ ବୋଦାଟି ସେ ବଜ୍ରାଘାତରେ ଜଳିଗଲା ।

ଦୀର୍ଘନିଃଶ୍ୱାସ ପକାଇ ପଣ୍ଡିତ ଓ ଶିଷ୍ୟମାନେ ଫେରି ଆସିଲେ ।

ସବୁ ଘଟଣା ଦେଖିଥିବା ବୃକ୍ଷରୂପୀ ବୋଧିସତ୍ତ୍ୱ ଆନନ୍ଦିତ ହେଲେ । କେବଳ ବୋଦା ଅଭିଶାପରୁ ମୁକ୍ତ ହେଲା ବୋଲି ନୁହେଁ, ପଣ୍ଡିତ ଓ ଶିଷ୍ୟମାନେ ଭବିଷ୍ୟତରେ ପଶୁବଳି ଦେବେ ନାହିଁ, ସେଥିପାଇଁ ।






# ସୁନାର ଗୋଲାପ

ଆର୍ମେନିଆ ଦେଶର ଗୋଟିଏ ଗ୍ରାମରେ ରହୁଥାଏ ଜଣେ ଗରିବ ଚାଷୀ । ପରିବାର ମଧ୍ୟରେ ଆଉ ଅଧିକା ଦୁଇଜଣ । ଜଣେ ହେଲା ତା'ର ସ୍ତ୍ରୀ ଓ ଅନ୍ୟ ଜଣକ ତା'ର ଏକମାତ୍ର ପୁତ୍ର । ତାଙ୍କର ଗୋଟିଏ ଛୋଟ ଜମି ଥାଏ । କିନ୍ତୁ ପରିବାର ଚଳିବା ପାଇଁ ସେ ଜମିର ଫସଲ ଯଥେଷ୍ଟ ହୁଏନାହିଁ । ତେଣୁ ମଝିରେ ମଝିରେ ତାଙ୍କୁ ଉପାସ ରହିବାକୁ ହୁଏ ।

ଥରେ ଏତେ କଷ୍ଟ ଓ ଦାରିଦ୍ର୍ୟ ମଧ୍ୟରେ ସେମାନେ ଚଳୁଥିଲେ ଯେ ଚାଷୀଟି ଜମିଟିକୁ ବିକିବାକୁ ବାଧ୍ୟ ହେଲା । ତାଙ୍କ ପଡ଼ୋଶୀ ଚାଷୀଟି ଜମିଟି କିଣିଲା । ବିପୁଳ ଉତ୍ସାହରେ ବଳଦ ଓ ହଳ କିଣି ଜମି ଚାଷ କରିବାକୁ ଲାଗିଲା । ଦିନେ କ୍ଷେତରେ ହଳ କରୁ କରୁ ତା'ର ହଳ କିଛି ଏକ କଠିନ ଜିନିଷରେ ବାଜିଲା । ସେ ହଳ ବନ୍ଦ କରି ସେ ସ୍ଥାନ ଖୋଳି ଦେଖେ ତ ଗୋଟିଏ ସୁନା ମୋହର ପୂର୍ଣ୍ଣ ମାଠିଆ ।

ସେ ନିଜେ ଜଣେ ସାଧୁ ପ୍ରକୃତିର ଲୋକ ଥିଲା । ତେଣୁ ସେ ସେହିକ୍ଷଣି ମାଠିଆଟି ଧରି ପୂର୍ବ ଚାଷୀ ଘରକୁ ଦୌଡ଼ିଲା । ସେଠାରେ ପହଞ୍ଚି କହିଲା, "ଭାଇ ଦେଖ ତୁମଠାରୁ ମୁଁ ସିନା ଜମିଟି କିଣିଛି କିନ୍ତୁ ଏ ମାଠିଆ ତ ନୁହେଁ । ଏଥିରେ ଅନେକ ସୁନା ମୋହର ଅଛି । ତମେ ଏହାକୁ ରଖ ।"

କିନ୍ତୁ ଆର ଚାଷୀଟି ରଖିବାକୁ ଆଦୌ ମଙ୍ଗିଲା ନାହିଁ । ସେ କହିଲା, "ମୁ ଯେତେବେଳେ ତୁମକୁ ଜମି ବିକିଛି; ସେ ଜମିରେ ଯାହା ଅଛି ତୁମର ।"

ଏପରି ବହୁ ସମୟ ତର୍କ ବିତର୍କ ପରେ ସେମାନେ ଠିକ୍ କଲେ ରାଜାଙ୍କ ପାଖକୁ ଯାଇ





ଏ କଥା ଫଇସଲ କରିଦେବାକୁ । ଏପରି ଦୁଇଜଣ ସାଧୁ ଚୃଷୀଙ୍କୁ ଦେଖି ରାଜା ମଧ୍ୟ ଚମକୃତ ହେଲେ । କିଛି ସମୟ ଚିନ୍ତା କରିବା ପରେ ରାଜା ପ୍ରଥମ ଚୃଷୀକୁ ପଚାରିଲେ, "ତୁମର କେତୋଟି ସନ୍ତାନ ?"

"ମାତ୍ର ଗୋଟିଏ ପୁଅ ମହାରାଜ ।" ପ୍ରଥମ ଚୃଷୀ କହିଲା ।

"ଆଉ ତୁମର ?" ରାଜା ଦ୍ୱିତୀୟ ଚୃଷୀକୁ ପଚାରିଲେ ।

"ମୋର ମାତ୍ର ଗୋଟିଏ ଝିଅ ଆଜ୍ଞା ।" ଦ୍ୱିତୀୟ ଚୃଷୀ କହିଲା ।

"ଚମତ୍କାର । ତା'ହେଲେ ତ ସମସ୍ୟା ସମାଧାନ ହୋଇଗଲା । ଦୁଇଜଣଙ୍କୁ ବିବାହ ଦେଇଦିଅ ଓ ସୁନାମୋହର ପୂର୍ଣ୍ଣ ମାଠିଆଟି ସେଇମାନଙ୍କୁ ଉପହାର ଦେଇଦିଅ ।" ରାଜା କହିଲେ ।

ଏପରି ସହଜ ସମାଧାନରେ ଚୃଷୀ ଦୁହେଁ ଅତ୍ୟନ୍ତ ଆନନ୍ଦିତ ହୋଇ ଘରକୁ ଫେରିଲେ । ଆହୁରି ବେଶି ଆନନ୍ଦିତ ହେଲେ ତାଙ୍କ ପୁଅଝିଅ କାରଣ ପୂର୍ବରୁ ଦୁହିଁଙ୍କ ମଧ୍ୟରେ ସ୍ନେହଶ୍ରଦ୍ଧାର ସମ୍ପର୍କ ଥିଲା । ସେମାନେ ମନେ ମନେ ବିବାହ କରିବାକୁ ଠିକ୍ କରିଥିଲେ ମଧ୍ୟ ସାଧୁ ବାପାମାନଙ୍କୁ ଏକଥା କହିପାରୁ ନଥିଲେ । ଏବେ ରାଜାଙ୍କ ସମାଧାନରେ ସେମାନଙ୍କ ଇଚ୍ଛା ମଧ୍ୟ ପୂରଣ ହେଲା । ତା'ଛଡ଼ା ସୁନା ମୋହର ପୂର୍ଣ୍ଣ ମାଠିଆ ମଧ୍ୟ ଘରେ ରହିଲା । ଏବେ ଦୁଇ ପରିବାର ଏକ ହୋଇଗଲେ ।



ବଡ଼ ଆଡ଼ମ୍ବର ସହକାରେ ବାହାଘର ହେଲା । ଗ୍ରାମଲୋକମାନେ ଭଲରେ ଭୋଜି ଖାଇଲେ । ତା'ପରେ ଜମି କିଛି କିଣାହେଲା; ବଡ଼ ଘର ତୋଳା ହେଲା ଓ ସେମାନେ ଏକାଠି ଆନନ୍ଦରେ ରହିଲେ ।

ଦୁଇ ପରିବାର କଠିନ ପରିଶ୍ରମ କରି ଅଧିକ ଫସଲ କରି ଅଧିକ ଧନ ଅର୍ଜ୍ଜନ କଲେ । ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଉଛି ଯେଉଁଠାରୁ ସୁନା ମୋହରର ମାଟିଆ ମିଳିଥିଲା ସେଠାରେ ଗୋଟିଏ ସୁନାର ଗୋଲାପ ଗଛ ଉଠିଲା । ସୁନେଲି ଗୋଲାପରେ ଗଛ ଭରି ଯାଇଥାଏ ।

ଦିନେ ରାଜାଙ୍କ ପୁଅ ଯୁବରାଜ ସେଇବାଟେ ଘୋଡ଼ା ଚଢ଼ି ଯାଉଥିଲେ । ସେ ସୁନେଲି ଗୋଲାପ ଗଛ ଦେଖି ଖୁବ୍ ଆଶ୍ଚର୍ଯ୍ୟ ହେଲେ ଓ ଗୋଟିଏ ଛୋଟ ଡାଳ ଭାଙ୍ଗି ନେବାକୁ ଚାହିଁଲେ । ଗଛ କାହାର କିଛି ନ ପଚାରି ଗୋଟିଏ ଫୁଲଭରା ଡାଳ ସେ ଘୋଡ଼ା ଉପରୁ ଥାଇ ହାତରେ ଭାଙ୍ଗି ଆଣିବାକୁ ଚେଷ୍ଟା କଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା ସେ ସ୍ପର୍ଶ କରିବା ମାତ୍ରେ ଗଛଟି ମାଟିରୁ ଉପରକୁ ଓ ଆହୁରି ଉପରକୁ ଉଠି ଆକାଶରେ ମେଘମାଳ ଭିତରେ କୁଆଡ଼େ ଅଦୃଶ୍ୟ ହୋଇଗଲା ।

ଏପରି ଦୃଶ୍ୟ ଦେଖି ଓ ଇପ୍ସିତ ଜିନିଷ ନ ପାଇ ଯୁବରାଜ ହତୋତ୍ସାହ ହୋଇ ପଡ଼ିଲେ । ପୁଣି ଗଛଟି ନିଜେ ନିଜେ ଉପରକୁ ଉଠିବାର ଦୃଶ୍ୟ ଦେଖି ଅଶ୍ଚର୍ଯ୍ୟ ହେଲେ ।





ସେ ବିଚାରା ଦୁଃଖରେ ନିଜ ବାଟରେ ଗଲେ। ଘୋଡ଼ା ଉପରୁ ଥାଇ ପଛକୁ ଫେରି ଚାହିଁ ଆହୁରି ଆଶ୍ଚର୍ଯ୍ୟ ହୋଇ ଦେଖିଲେ ଯେ ଗଛଟି ଯଥା ସ୍ଥାନରେ ସେମିତି ରହିଛି।

ସେ ପୁଣି ଫେରିଲେ ଓ ପୁଣି ଡାଳଟିଏ ଭାଙ୍ଗିଲେ। ପୁଣି ଗଛଟି ଉଡ଼ିଗଲା। ଏଇପରି ସେ ତିନିଥର କଲେ। କିନ୍ତୁ ସେହି ଏକହିଁ ଘଟଣା ଘଟିଲା। ସେ ଏହାର ରହସ୍ୟ କିଛି ବୁଝିପାରିଲେ ନାହିଁ। କିମ୍ବା ବୁଝିବାକୁ ଚେଷ୍ଟା ମଧ୍ୟ କଲେ ନାହିଁ। କେବଳ ନିଜର ବିଫଳତା ଯୋଗୁ ଖୁବ୍ ରାଗିଗଲେ। ସାମାନ୍ୟ ଗଛଟା ତାଙ୍କୁ ଯେପରି ଠକାଉଛି ସେମିତି ସେ ଅନୁଭବ କଲେ। ସେ ଗୋଲାପ ନେଇପାରୁ ନାହାନ୍ତି ଅଥଚ ଗଛଟା ସେଇଠି ରହିବ ଏକଥା ତାଙ୍କ ପାଇଁ ଅସହ୍ୟ ହେଲା। ସେ ତାଙ୍କ ଚାକରମାନଙ୍କୁ ଆଦେଶ ଦେଲେ ସେଇ ଜମିରେ ଯାହା କିଛି ଅଛି ସବୁ ଭାଙ୍ଗି, ଖୋଳି ଧ୍ୱଂସ କରି ଦେବାକୁ।

ସେଇଠାରୁ ସେ ଫେରିଯାଇ ତାଙ୍କ ପିତା ରାଜାଙ୍କୁ ସାରା ବୃତ୍ତାନ୍ତ ଶୁଣାଇଲେ। ସେ ମଧ୍ୟ ବହୁତ ଆଶ୍ଚର୍ଯ୍ୟ ହେଲେ ଓ ରାଜ୍ୟର ସବୁ ଜ୍ଞାନୀ ଲୋକଙ୍କୁ ଡାକି ଏହାର ରହସ୍ୟ ଉଦ୍‌ଘାଟନ କରିବାକୁ ଚେଷ୍ଟା କଲେ। କିନ୍ତୁ କେହି କିଛି କହି ପାରିଲେ ନାହିଁ।

ଅବଶେଷରେ ଯୁବରାଜ ପୃଥିବୀ ଭ୍ରମଣ କରି ଏହାର ଉତ୍ତର ପାଇବା ପାଇଁ ବାହାରିଲେ। ଉତ୍ତର ନ ପାଇଲେ ଫେରିବେ ନାହିଁ ବୋଲି ଶପଥ କଲେ।

ବହୁଦିନ ବହୁ ସ୍ଥାନରେ ଭ୍ରମଣ କରି ଅନେକ ଜ୍ଞାନୀ ଲୋକଙ୍କୁ ସେ ଭେଟିଲେ। କିନ୍ତୁ କେହି କିଛି କହିପାରିଲେ ନାହିଁ। ଶେଷରେ ଜଣେ ବୁଢ଼ୀକୁ ଭେଟି ସେ ସବୁକଥା କହିଲେ। ବୁଢ଼ୀ ସବୁ ଶୁଣି କହିଲା, "ଏଇ କଥାକୁ ଏତେ ଦୁଃଖ? ମୁଁ ନିଜେ ସିନା ଏହାର ଉତ୍ତର କହିପାରିବି ନାହିଁ କିନ୍ତୁ ମୁଁ କହିଦେଇ ପାରିବି କିଏ ଏସବୁର ଉତ୍ତର କହିପାରିବ। ତମେ ଯିବା ବାଟରେ ଯେଉଁ ପ୍ରଥମ ନଗରଟି ପଡ଼ିବ ସେଇଠି ଜଣେ ବାମନ ବାସ କରେ। ତାକୁ ପଚାରିଲେ ସେ କହିଦେବ।"

ଯୁବରାଜ ସେହି ନଗରୀରେ ପହଞ୍ଚି ବାମନକୁ ଦେଖାଇଲେ ଓ ସୁନାର ଗୋଲାପ ଗଛ କଥା କହିଲେ । ବାମନଟି ସବୁ ଶୁଣି କହିଲା, "ସୁନାର ଗୋଲାପ ଗଛ, ସଦ୍‌ଗୁଣ ସାଧୁତା ଓ କଠିନ ପରିଶ୍ରମର ପ୍ରତୀକ ରୂପେ ସେଠାରେ ଦେଖା ଦେଇଛି । ତା'ପରେ ଫୁଲ ନେବାକୁ ଚେଷ୍ଟା କରିବା ବେଳେ ତାହା ଅଦୃଶ୍ୟ ହୋଇ ଯାଉଛି ଅର୍ଥାତ୍ କେହି କାହାର ଶସ୍ୟ ବଳପୂର୍ବକ ନେଇ ପାରିବ ନାହିଁ ବା କାହାର ସମ୍ପତ୍ତି ନଷ୍ଟ କରି ପାରିବ ନାହିଁ । ଏହି ଗଛଟିର ଉପସ୍ଥିତ ଲୋକମାନଙ୍କୁ ଶିକ୍ଷା ଦେବ ଯେ କାହାର ସମ୍ପତ୍ତି ଦେଖି ଅନ୍ୟ କେହି ଇର୍ଷ୍ୟା କରିବା ଉଚିତ୍ ନୁହେଁ । ବରଂ କଠିନ ପରିଶ୍ରମ ଓ ସାଧୁ ସ୍ୱଭାବ ନେଇ ନିଜେ ରୋଜଗାର କରିବା ଉଚିତ୍ ।"

ନିଜର ଧ୍ୱଂସାତ୍ମକ କାର୍ଯ୍ୟ କଥା ଭାବି ଯୁବରାଜ ଲଜ୍ଜିତ ହେଲେ । ବାମନକୁ ସେ ଧନ୍ୟବାଦ ଦେଇ ଓ କିଛି ପୁରସ୍କାର ଦେଇ ଘରକୁ ଫେରିଲେ । ଆହୁରି ଆଶ୍ଚର୍ଯ୍ୟ ହୋଇ ଦେଖିଲେ ସୁନାର ଗୋଲାପ ଗଛଟି ନିଜ ସ୍ଥାନକୁ ପୁଣି ଫେରି ଆସିଛି । ଜମି ଗୁଡ଼ିକ ଫସଲରେ ହସି ଉଠୁଛି । ଯୁବରାଜ ନିଜ ଦୁଷ୍କର୍ମ ପାଇଁ ଯେତିକି ଅନୁତାପ କରିଥିଲେ ଏସବୁ ଦେଖି ସେତିକି ବିସ୍ମିତ ଓ ଆନନ୍ଦିତ ହେଲେ । ଏବେ ତାଙ୍କର ପ୍ରକୃତି ସମ୍ପୂର୍ଣ୍ଣ ବଦଳି ଯାଇଥିଲା ।

ସୁନାର ଗୋଲାପ ଗଛ ସେଇଠି ସବୁଦିନ ପାଇଁ ସୁନାର ଗୋଲାପ ସବୁରେ ଭର୍ତ୍ତି ହୋଇ ଶୋଭା ପାଇଲା । ସେ ରାଜ୍ୟର ସମସ୍ତ ନାଗରିକଙ୍କୁ ମଣିଷର ଭଲଗୁଣ ବିଷୟରେ ଆଉ ବୁଝାଇବାକୁ ପଡ଼ିଲା ନାହିଁ । ଛୋଟଠାରୁ ବଡ଼ ପର୍ଯ୍ୟନ୍ତ ସମସ୍ତେ ଏ ଗଳ୍ପଟି ଜାଣନ୍ତି ଓ ସୁନାର ଗୋଲାପ ଦେଖିବା ମାତ୍ରେ ସେମାନଙ୍କର ମନେ ପଡ଼ିଯାଏ ଦୁଇ କୃଷୀଙ୍କର ସାଧୁତା ଓ ପରିଶ୍ରମ କଥା ।



# ସାହସୀ ପ୍ରତାପ

[ଅନାଥ ବାଳକ ପ୍ରତାପକୁ ଜଣେ ସାଧୁ ପାଳିଥିଲେ। ସାଧୁଙ୍କ ମୃତ୍ୟୁ ପରେ ସେ ବଣରେ ସେମିତି ଥାଏ। ତା'ର ଦୁଇଜଣ ବନ୍ଧୁ ଥା'ନ୍ତି; ଜଣେ ହେଉଛି ରଘୁ, ମାଙ୍କଡ଼ଟିଏ, ଅନ୍ୟଟି ମୀନା, କାଠଉଆ ଚଢ଼େଇଟିଏ।]



ବଣ ଭିତରେ ଥରେ ଥରେ ଗୋଟାଏ ଡାକୁ ଦଳ ଆସି ଲୁଚି ରହୁଥିଲେ। ଥରେ ବଣ ପାଖଦେଇ ଯାଉଥିବା ତୀର୍ଥଯାତ୍ରୀମାନଙ୍କୁ ସେମାନେ ଲୁଣ୍ଠନ କଲେ।



ସେ ଦୃଶ୍ୟ ଗଛ ଉପରୁ ଦେଖୁଥିଲେ ପ୍ରତାପ ଓ ରଘୁ। ସେ ଦୁହେଁ ଗୋପନରେ ଡାକୁଦଳର ଅନୁସରଣ କଲେ।



ଲୁଣ୍ଠିତ ସମ୍ପଦକୁ ଡାକୁଦଳ ଖଣ୍ଡିଏ ଲୁଗାରେ ବାନ୍ଧି ଗୋଟାଏ ଗୁଂଫା ଭିତରେ ଲୁଚାଇ ଦେଲେ ଓ ଗୁଂଫା ଦ୍ୱାରକୁ ଖଣ୍ଡିଏ ଭାରି ପଥର ଦ୍ୱାରା ବନ୍ଦ କରି ଦେଇ ଚାଲିଗଲେ।



ପ୍ରତାପ ଯାଇ ଗୁଂଫା ଉପରୁ ପଥର ଘୁଞ୍ଚାଇବାକୁ ଚେଷ୍ଟା କଲା; କିନ୍ତୁ ପାରିଲା ନାହିଁ। ତେବେ ଗୋଟିଏ ଅତି ସରୁ ସୁଡ଼ଙ୍ଗ ସେ ଦେଖି ପାରିଲା।



ପ୍ରତାପର ଇଙ୍ଗିତରେ ମାଙ୍କଡ଼ ଚନ୍ଦୁ ସେ ସୁଡ଼ଙ୍ଗ ଦେଇ ଗୁଂଫା ଭିତରେ ପଶିଲା । କିନ୍ତୁ ସୁଦ୍ଧା ଗଣ୍ଠିଲି ବାହାର କରି ଆଣି ପାରିଲା ନାହିଁ । ତାକୁ ଖୋଲି ସେ ଗୋଟିଏ ଗୋଟିଏ ଜିନିଷ ଆଣି ପ୍ରତାପକୁ ବଢ଼ାଇ ଦେବାକୁ ଲାଗିଲା ।



ଅବଶେଷରେ ସେସବୁ ବନ୍ଧା ହୋଇଥିବା ଲୁଗା ଖଣ୍ଡିକ ମଧ୍ୟ ସେ ବାହାର କରି ଆଣି ପ୍ରତାପ ହାତକୁ ବଢ଼ାଇ ଦେଲା ।



ସେଦିନ ସନ୍ଧ୍ୟାବେଳେ ତୀର୍ଥଯାତ୍ରୀଦଳ ବଣର ଅଦୂରବର୍ତ୍ତୀ ଗୋଟିଏ ଚଟି ଘରେ ବିଶ୍ରାମ କରି ସକାଳେ ପୁଣି ଯାତ୍ରାରମ୍ଭ କରୁଥିଲେ । ହଠାତ୍ ପଛରୁ ସେମାନେ ଶୁଣିଲେ, "ହୁହ !"



ସେମାନେ ଅଟକି ଗଲେ । ପ୍ରତାପ ସେମାନଙ୍କୁ ଡକାଏତମାନେ ନେଇଥିବା ଟଙ୍କାକ ଫେରାଇ-ଦେଲା । ସେମାନେ ଆନନ୍ଦରେ ପ୍ରତାପକୁ ପୁରସ୍କାର ଦେବାକୁ ଉଦ୍ୟମ କଲାବେଳକୁ ପ୍ରତାପ ଦୌଡ଼ି ପଳାଇଲା ।



ଥରେ ଡକାଏତମାନେ ଗୋଟାଏ ଗାଁ ଉପରେ ଚଢ଼ଉ କରିବାର ମନ୍ତ୍ରଣା କରୁଥିଲେ । ପ୍ରତାପ ଗାଁ ଲୋକଙ୍କୁ ସତର୍କ କରିଦେବା ଫଳରେ ଡାକୁଦଳ ଧରା ପଡ଼ିଲେ । ଗାଁ ଲୋକେ ପ୍ରତାପକୁ ଗୋଟାଏ ଘୋଡ଼ା ପୁରସ୍କାର ଦେଲେ ।



ଦିନେ ନଦୀରେ ସନ୍ତରଣ କଲାବେଳେ ସ୍ରୋତ ଗତିରେ ଭାସିଯାଇ ପ୍ରତାପ ଗୋଟାଏ ସୁଡ଼ଙ୍ଗ ଭିତରେ ପଶିଲା । ସେଠାରେ ସେ ଦେଖିଲା ପ୍ରଚୁର ସୁନା ଟଙ୍କା । ପ୍ରତାପ ସେଥିରୁ କିଛି ଆଣି ଗରିବ ଲୋକଙ୍କୁ ବାଣ୍ଟିଦେଲା ।



ଜଣେ ଜମିଦାର ସେ ସନ୍ଧାନ ପାଇ ଜଣେ ଗରିବ ଲୋକର ଛଦ୍ମବେଶରେ ଆସି ବଣରେ ପହଞ୍ଚିଲା ଓ ପ୍ରତାପକୁ କାକୁତି ମିନତି କରି ସାହାଯ୍ୟ ମାଗିଲା ।



ପ୍ରତାପ ଦୟା କରି ନଈକୁ ଡେଇଁ ପଡ଼ି ସୁଡ଼ଙ୍ଗ ଭିତରେ ପ୍ରବେଶ କଲା ଓ ସେଠି ପାହାଡ଼ ଗାତରେ ଥିବା ସୁନା ଟଙ୍କାରୁ କିଛି ଆଣି ଜମିଦାରକୁ ଦେଲା ।



ଜମିଦାର ସେ ସ୍ଥାନକୁ ଲକ୍ଷ୍ୟ କରି ଦେଖିନେଲେ । ଗଡ଼ରେ ନଈରେ ପହଁରି ପହଁରି ଯାଇ ସେ କନ୍ଦ ଭଳି ସୁଡ଼ଙ୍ଗ ଭିତରେ ପଶିଲେ । ଠିକଣା ପାଇଲେ ନାହିଁ କି ଏଣେ ବାହାରି ପାରିଲେ ନାହିଁ ।



ଦୁଇଦିନ କାଳ ସୁଡ଼ଙ୍ଗ ଭିତରେ ଅଟକି ରହି ଜମିଦାର ପାଟି କରିବାକୁ ଲାଗିଲେ, "ରକ୍ଷା କର, ରକ୍ଷା କର !" ପାହାଡ଼ ଉପରୁ ମୀନା ପ୍ରଥମେ ସେ ଆର୍ତ୍ତନାଦ ଶୁଣିଲା ।



ପ୍ରତାପ ପାଣିକୁ ଡେଇଁପଡ଼ି ସୁଡ଼ଙ୍ଗରେ ପଶି ଜମିଦାରଙ୍କୁ ଦେଖିଲା । ଜମିଦାର ପ୍ରତାପ ଆଗରେ କାନ୍ଦି କାନ୍ଦି ହୋଇ ନିଜର ଭୁଲ ପାଇଁ ଦୁଃଖ ପ୍ରକାଶ କଲେ ।



ସେ ଆଉ କେବେ ସୁଡ଼ଙ୍ଗରୁ ବୈର କରିବ ନାହିଁ ବୋଲି ପ୍ରତିଶ୍ରୁତି ଦେବାରୁ ପ୍ରତାପ ତା' ଆଖିରେ ପଟି ବାନ୍ଧି ତାଙ୍କୁ ବାହାରକୁ ନେଇ ଆସିଲା ।



କିନ୍ତୁ ଦୁଷ୍ଟ ଜମିଦାର ସହଜରେ ଲୋଭ ଛାଡ଼ିବା ଲୋକ ନୁହେଁ । ଦିନେ ପ୍ରତାପ ତା' ଘୋଡ଼ା ଚଢ଼ି ଯାଉଥିବା ବେଳେ ଶୁଣିଲା ଏକ ଆର୍ତ୍ତନାଦ—
"ମଲି ! ମଲି !"



ପ୍ରତାପ ସେ ଧ୍ୱନି ଲକ୍ଷ୍ୟ କରି ଯାଇ ଗୋଟାଏ ବୁଢ଼ା ପାଖରେ ପହଞ୍ଚିବା ମାତ୍ରେ ଜମିଦାରର ଗୁଣ୍ଡାମାନେ ତାକୁ କାବୁ କରିନେଲେ ।



ଜମିଦାର ପ୍ରତାପକୁ ତା' ନିଜ ଘରର ଉପର ମହଲରେ ବନ୍ଦୀ କରି ରଖିଲା ଓ କହିଦେଲା, ସୁନାଠେଙ୍ଗା ଥିବା ସୁଡ଼ଙ୍ଗର ସନ୍ଧାନ ନ ଦେବାଯାଏ ତାକୁ ମୁକ୍ତି ମିଳିବ ନାହିଁ ।

ରାତିରେ ଛାତ କଣା କରି ପ୍ରତାପ ପାଖକୁ ଦଉଡ଼ି ଲମ୍ବାଇ ଦେଲା ରଘୁ । ଦଉଡ଼ିର ଅନ୍ୟ ପ୍ରାନ୍ତ ଛାତର ଖଣ୍ଡିଏ ବରଗାରେ ବାନ୍ଧି ଦେଇଥାଏ । ତାକୁ ଧରି ପ୍ରତାପ ଉପରକୁ ଉଠି ଆସିଲା ।





ତଳେ ପ୍ରତାପର ଘୋଡ଼ାକୁ ଜମିଦାର ବାନ୍ଧି ରଖିଥାଏ । ଚନ୍ଦୁ ଦାନ୍ତରେ ତା' ବନ୍ଧନ କାଟିଦେଲା । ପ୍ରତାପ ଉପରୁ ଲଂଫ ଦେଇ ଚନ୍ଦୁକୁ ଧରି ଘୋଡ଼ା ଛୁଟାଇ ଦେଲା ।



ଶବ୍ଦ ଶୁଣି ଜମିଦାରର ଲୋକେ ଉଠିବା ବେଳକୁ ପ୍ରତାପର ପତ୍ତା ନାହିଁ । ସେମାନେ ପଛରେ ଧାଇଁଲେ, କିନ୍ତୁ ପ୍ରତାପ ବଣ ଭିତରେ ପଶିଗଲା ।



ଚନ୍ଦୁ ତାକୁ ମୁକ୍ତ କରିଥିବାରୁ ପ୍ରତାପ ତାକୁ ବହୁତ ଆଦର କଲା । ଆନନ୍ଦରେ ସେ କାନ୍ଦି ପକାଇଲା ।



ପରଦିନ ସୂର୍ଯ୍ୟୋଦୟ ବେଳେ ପ୍ରତାପ ଯାଇ ତାକୁ ପାଳନ କରିଥିବା ସାଧୁଙ୍କ ସମାଧିରେ ପ୍ରଣାମ କଲା । ସାଧୁଙ୍କ ଆଶୀଷ ତାକୁ ସାହାଯ୍ୟ କରୁଥାଏ ବୋଲି ସେ ଜାଣିଥାଏ ।



# ରାଜପୁତ୍ର ଓ ମୟୁର

କାହିଁ କେଉଁ କାଳର କଥା । ଦକ୍ଷିଣ ସମୁଦ୍ରର ଗୋଟିଏ ଦ୍ୱୀପରାଜ୍ୟରେ ରାଜୁତି କରୁଥିଲେ ଜଣେ ରଜା । ତାଙ୍କର ଗୋଟିଏ ବୋଲି ପୁଅ । ସେ ଦ୍ୱୀପର ଲୋକେ ବେଶ୍ ଆନନ୍ଦରେ ଥାନ୍ତି । କାରଣ ସେଠି ସବୁବେଳେ ଭଲ୍ ଫସଲ୍ ହେଉଥାଏ । ଉଜ୍ଜ୍ୱଳ ସୂର୍ଯ୍ୟ କିରଣରେ ଦ୍ୱୀପର ପାହାଡ଼ ପର୍ବତ ନଦୀ ଝରଣା ଝଲ୍ ମଲ୍ କରୁଥାନ୍ତି । ନାନା ଜାତିର ଫଳମୂଳ ବି ହେଉଥାଏ ।

କିନ୍ତୁ ରାଜାଙ୍କ ମନରେ ସୁଖ ନଥାଏ । କାରଣ ତାଙ୍କର ଏକମାତ୍ର ପୁଅଟି ଜନ୍ମରୁ ମୂକ ହୋଇ ରହିଥାଏ । କେତେ ଚେଷ୍ଟା ଚରିତ୍ର ହେଲା । କିନ୍ତୁ ରାଜପୁତ୍ର କଥା କହିଲା ନାହିଁ ।

ସେହି ରାଜ୍ୟର ଗୋଟାଏ ଗାଁରେ ପାଙ୍ଗୋ ନାମରେ ଟୋକାଟାଏ ଥାଏ । ସେ ଅସଲ ଅଳସୁଆ । ସୂର୍ଯ୍ୟକିରଣକୁ ପିଠି ଦେଖାଇ ଉଷୁମ ଉପଭୋଗ କରି ପଡିଥାଏ । ଯେତେବେଳେ କିଛି କରୁଥାଏ, ସେତେବେଳେ ଅନ୍ୟମାନଙ୍କୁ ହଇରାଣ ହରକତହିଁ କରୁଥାଏ ।

ତେବେ ସେଠିକା ଲୋକମାନେ ଭଲ୍ । ତା' କାମଦାମ ସେମାନେ ଦୟାପରବଶ ହୋଇ କରିଦେଉଥାନ୍ତି ।

କିନ୍ତୁ କେତେଦିନ ବା ସେମାନେ ତା' ପାଇଁ କାମ କରିବେ । ଦିନେ ଗାଁ ଲୋକେ ତାକୁ କହିଦେଲେ, "ଦେଖ ବାପା, ଏଥର ନିଜ ପେଟ ନିଜେ ପୋଷିବାର ଚେଷ୍ଟା କର । ଆଉ ଆମ ମୁହଁକୁ ଅନାଇ ବସନା ।"

ପାଙ୍ଗୋ ଅଗତ୍ୟା ଜୀବିକା ସନ୍ଧାନରେ ବାହାରିଲା । କିଛି ବାଟ ଗଲା ପରେ ରାସ୍ତା କଡରେ ଥିବା ଗୋଟାଏ ଘରର ପିଣ୍ଡାରେ ସେ ବସି ପଡ଼ିଲା । ମୁଠିଏ ଖାଇବାକୁ ମିଳିଯିବ, ଏ ଆଶାଥାଏ ।



ଶ୍ରୀମତୀ ଆଶାଲତା ବେହେରା





ସେ ଘରେ ରହୁଥିବା ଜଣେ ବୁଢ଼ୀ ପାଙ୍ଗୋକୁ ଖାଇବାକୁ ଦେଲା । ସେଇ ବୁଢ଼ୀ ପାଖରୁ ପାଙ୍ଗୋ ପ୍ରଥମେ ରାଜାଙ୍କ ଦୁଃଖ କଥା ଶୁଣିଲା । ରାଜା ଘୋଷଣା କରିଥିଲେ, ଯିଏ ରାଜପୁତ୍ରଙ୍କ ସକାଶେ ଉପଯୁକ୍ତ କଣ୍ଠସ୍ୱରଟିଏ ଆଣିଦେଇ ପାରିବ ଯିଏ କୋଠରି ଭର୍ତ୍ତି ସୁନା, କୋଠରି ଭର୍ତ୍ତି ସୁଖାଦ୍ୟ ଏବଂ କୋଠରି ଭର୍ତ୍ତି ପୋଷାକ ପୁରସ୍କାର ପାଇବ । କିନ୍ତୁ ସେଯାଏ କେହି ରାଜାଙ୍କ ସର୍ତ୍ତ ପୂରଣ କରିପାରି ନଥିଲେ ।

ପାଙ୍ଗୋ ଭାବିଲା, ସେ ରାଜାଙ୍କ ଇଚ୍ଛା ମୁତାବକ କାମ କରିଦେଲେ ବେଶ୍ ମଜା ହୁଅନ୍ତା । ଭାବିଲା ଯିନା, କିନ୍ତୁ କେମିତି ସେ କାମ କରିବ? ସେକଥା ସେ ଠଉରାଇ ପାରିଲା ନାହିଁ ।

ବାଟରେ ସେ ଗୋଟାଏ ବୁଢ଼ାକୁ ଭେଟିଲା । ସେ ଲୋକଟା ଭଳି କ୍ଷୀଣକାୟ ଲୋଚିଆ ମଣିଷ ପାଙ୍ଗୋ ଜୀବନରେ ଦେଖି ନଥିଲା । ଅଥଚ ଯିଏ ମୁଣ୍ଡରେ ବୋହୁଥିଲା ଏଭଳି ବୋଝ ଯାହା ତା'ର ଦୁଇଗୁଣ!

ପାଙ୍ଗୋ ସ୍ୱଭାବରେ ଥିଲା ଦୟାଳୁ । ସେ କହିଲା, "ବୁଢ଼ା ପୁଅ! ତମକୁ ବହୁତ କଷ୍ଟ ହେଉଥିବ । ଦିଅ । ମୁଁ ବୋହି ନେଇଯିବି ।"

"ଧନ୍ୟବାଦ!" କହି ବୁଢ଼ା ତା' ବୋଝ ପାଙ୍ଗୋକୁ ଦେଲା । ଦୁହେଁ ବାଟ ଚାଲୁଁ ଚାଲୁଁ ବୁଢ଼ା ପଚାରିଲା, "ପୁଅ, ତୁ ଯାଉଛୁ କୁଆଡ଼େ?"

"ମଉଷା! ଯାଉଛି ରାଜାଙ୍କ ନଅର ଆଡ଼େ । ରାଜପୁତ୍ରଙ୍କୁ ଉପଯୁକ୍ତ କଣ୍ଠସ୍ୱର ଯୋଗାଇଦେବା ମୋର ଉଦ୍ଦେଶ୍ୟ । ଅସୁବିଧା ହେଲା, କାମଟି କେମିତି କରିବ ସେକଥା ଜାଣେନା!" ପାଙ୍ଗୋ କହିଲା ।

"ପୁଅ! ଏଇଟା ସେମିତି କିଛି କାଠିକର ପାଠ ନୁହେଁ । ତେବେ କେହି ଏହାର ସୂତ୍ର ଜାଣନ୍ତି ନାହିଁ ବୋଲି ରାଜକୁମାର ଏଯାଏ ମୂକ ହୋଇ ବସିଛି । ତୋତେ ଗୋଟାଏ ଅତି ମଧୁର କଣ୍ଠ ଖୋଜି ବାହାର କରିବାକୁ ହେବ । ସେ ଏତେ ମଧୁର ହୋଇଥିବ ଯେ ତାକୁ ଶୁଣିଦେବା ମାତ୍ରେ ତାକୁ ଅନୁକରଣ କରିବାକୁ ରାଜକୁମାରର ମନ ବଳିବ । ବାସ୍,



ସେ ଅନୁକରଣ କରିବାକୁ ଚେଷ୍ଟା କରିବା ମାତ୍ରେ ସେ ସ୍ୱର ତା'ର ହୋଇଯିବ!" ବୁଢ଼ା ବତେଇ ଦେଲା ।

ବୁଢ଼ା ଏଥର ତା' ବୋଝ ଧରି ନିଜ ବାଟରେ ଗଲା । ପାଙ୍ଗୋ ଚାଲିଲା ରାଜଧାନୀ ଆଡ଼େ । ତା' ମନ ଖୁସ୍ ହୋଇ ଯାଇଥାଏ । ବାଟରେ ସେ ଗୋଟାଏ ଘୁଷୁରିକୁ ଭେଟିଲା । "ଘୁଷୁରି ପୁଅ, ତମେ ଯଦି ରାଜପ୍ରାସାଦକୁ ଯିବ, ତେବେ ରାଜାଙ୍କୁ କହିବ କ'ଣ?" ପାଙ୍ଗୋ ପଚାରିଲା ।

"ଗ୍ରାଙ୍ଘ୍, ଗ୍ରାଙ୍ଘ୍, ଗ୍ରାଙ୍ଘ୍" ଘୁଷୁରି କହିଲା ।

ପାଙ୍ଗୋ ମୁଣ୍ଡ ହୁଙ୍କାରି ଦେଇ ଚାଲିଗଲା, ସେ ବୁଝିଲା, ଏଭଳି କଣ୍ଠସ୍ୱର ରାଜକୁମାରଙ୍କୁ ଖଟିବ ନାହିଁ ।

ଏହାପରେ ତା'ର ଦେଖାହେଲା ଗୋଟାଏ ଛେଳି ସହିତ । "ଛେଳି ପୁଅ, ତମେ ରାଜପ୍ରାସାଦରେ କେମିତି ଭାବରେ କଥାବାର୍ତ୍ତା ହେବ?" ସେ ପଚାରିଲା ।

"ମେ ମେ ମେ!"

ନାଃ—ଇଏ ଚଳିବ ନାହିଁ । ଏହା ଭାବି ପାଙ୍ଗୋ ଚାଲିଗଲା । କିଛିବାଟ ପରେ ଦେଖା ହେଲା ଗୋଟାଏ କୁକୁଡ଼ା ସହ । "କୁକୁଡ଼ା ପୁଅ, ତମେ ରାଜାଙ୍କ ସହ କେମିତି ଭାବରେ କଥାବାର୍ତ୍ତା କରିବ?" ସେ ପଚାରିଲେ ।

"କକ୍‌କେ କୋ!"

ଏ କଣ୍ଠସ୍ୱର ଚଳିବ ନାହିଁ! ମନେ ମନେ ଏହା କହି ପାଙ୍ଗୋ ହତାଶ ଭାବରେ ଆଗକୁ ଆଗକୁ ଚାଲିଲା । ଅଳ୍ପ ଦୂର ଯିବା ପରେ ସେ ଗୋଟାଏ ମୟୂରକୁ ଭେଟିଲା । ବଡ଼ ଆରାମରେ ଗୋଟାଏ ବୁଦା ଉପରେ ମୟୂରଟି ବସିଥିଲା ।

"ମୟୂର ପୁଅ, ରାଜାଙ୍କ ସହ ଦେଖା ହେଲେ ତମେ କେଉଁ ଭଳି ଭାବରେ କଥାବାର୍ତ୍ତା କରିବ?" ସେ ପଚାରିଲା ।

"ମୁଁ କାହିଁକି କଥାବାର୍ତ୍ତା କରିବାକୁ ଯିବି? ମୋର କେଉଁ ଗରଜ?" ସଗର୍ବେ ମୟୂର ଉତ୍ତର ଦେଲା । "ମୁଁ ଯଦି ଗୀତ ବୋଲିବାକୁ ଆରମ୍ଭ କରିବି, ତେବେ ସମସ୍ତେ ମନ୍ତ୍ରମୁଗ୍ଧ ହୋଇ ନୀରବରେ ଖାଲି ଶୁଣୁଥିବେ । କଥାବାର୍ତ୍ତା କରିବା ଦରକାର ପଡ଼ିବ ନାହିଁ ।"

ଏତକ କହି ମୟୂର ଗୀତ ବୋଲିବାକୁ ଆରମ୍ଭ କଲା । ସେ ସ୍ୱର ଏଡ଼େ ମଧୁର ଯେ ପବନ ବି ସ୍ଥିର ହୋଇଗଲା ।

ପାଙ୍ଗୋ ଆନନ୍ଦରେ ନାଚି ଉଠିଲା । "ଏଇଭଳି କଣ୍ଠସ୍ୱର ରାଜକୁମାରଙ୍କୁ ମାନିବ!" ସେ ମନେ ମନେ କହିଲା ।

ପାଙ୍ଗୋ ଯାଇ ରାଜପ୍ରସାଦରେ ପହଞ୍ଚିଲା ଓ ରାଜାଙ୍କୁ ଦେଖାକରି କହିଲା, "ମହାରାଜ, ଆପଣ ଗୋଟାଏ ପ୍ରତିଯୋଟିତାର ବ୍ୟବସ୍ଥା କରନ୍ତୁ । ଯିଏ ସବୁଠାରୁ' ମଧୁର କଣ୍ଠରେ ଗୀତ ବୋଲିବ, ସେ ମୋଟା ପୁରସ୍କାର ପାଇବ ।"

ପ୍ରତିଯୋଗିତାର ଘୋଷଣା ହେଲା । ରାଜା, ରାଣୀ, ପାତ୍ରମିତ୍ର ଉପସ୍ଥିତ ଥା'ନ୍ତି । ରାଜକୁମାରଙ୍କୁ ପାଙ୍ଗୋ ଗୋଟାଏ କୋଣରେ ବସାଇ ଦେଇଥାଏ ।

ପ୍ରଥମେ ଘୁସୁରି ଗୀତ ବୋଲିଲା । ସେଥିରେ ସଙ୍ଗୀତର ସ ଅକ୍ଷର ନଥିଲା । ତା'ପରେ ଛେଳି ରଡି କଲା । ରାଜା ରାଣୀ କୌଣସି ମତେ କାନରେ ହାତ ଦେଇ ବସି ରହିଲେ । ତା'ପରେ କୁକୁଡ଼ା ଡାକ ଦେଲା । ପରେ ପରେ ଅନ୍ୟଜଣଯାକ ମିଶି ଗୋଟାଏ ସମବେତ ସଙ୍ଗୀତ ବୋଲିଲେ । ରାଜା ନିଜ ଛାତିରେ ହାତ ଦେଉଥାନ୍ତି ତ ପୁଣି କାନରେ ହାତ ଦେଉଥାନ୍ତି । କୌଣସି ମତେ ସେ ପର୍ବ ସରିଲା ।

ଏହାପରେ ଗର୍ବିତ ପଦକ୍ଷେପରେ ମୟୂର ଆଗକୁ ଆସିଲା । ସେ ଏପରି ମଧୁର ଗୀତ



ବୋଲିଲା ଯେ ସମସ୍ତେ ସ୍ତବ୍ଧ ହୋଇ ଶୁଣିଲେ ।

କିଛି ସମୟ ପରେ ମୟୂର ନୀରବ ହେଲା । କିନ୍ତୁ ସଙ୍ଗୀତ ତଥାପି ଶୁଭୁଥାଏ । କଥା କ'ଣ କି, ରାଜକୁମାର ନିଜକୁ ଭୁଲିଯାଇ ମୟୂରର ଗୀତ ଅନୁକରଣ କରି ନିଜେ ବୋଲୁଥାନ୍ତି ।

ରାଜକୁମାରଙ୍କ କଣ୍ଠ ଖୋଲିଯିବାର ଶୁଣି ରାଜାଙ୍କ ଆନନ୍ଦ କହିଲେ ନସରେ ।

ଯେତେବେଳେ ରାଜକୁମାର ଗୀତ ଶେଷ କଲେ, ସେତେବେଳେ ମୟୂର ପୁଣି ଗୀତ ବୋଲିବାକୁ ଚେଷ୍ଟା କଲା । କିନ୍ତୁ ତା' ଗଳାରୁ ଗୋଟାଏ କର୍କଶ ଶବ୍ଦ ବାହାରିଲା ।

"ଇଏ କ'ଣ? ମୋ କଣ୍ଠସ୍ୱର ତ ଚୋର ହୋଇଯାଇଛି!" ମୟୂର କ୍ଷୁବ୍ଧ ହୋଇ କହିଲା ।

ରାଜା ପାଙ୍ଗୋ ଆଡ଼େ ଅନାଇ କହିଲେ, "ବାବୁ, ତମେ ମୋର ବହୁତ ଉପକାର କରିଛ ସତ, କିନ୍ତୁ ମୟୂରକୁ ତମେ ଦଗା ଦେଇଛ । ତମେ କୋଠରି ଭର୍ତ୍ତି ସୁନା ଓ କୋଠରି ଭର୍ତ୍ତି ସୁଖାଦ୍ୟ ପାଇବ । ତେବେ କୋଠରି ଭର୍ତ୍ତି ଲୁଗା ପାଇବ ମୟୂର । ତାହା ହେବ ତା' କଣ୍ଠସ୍ୱର ବାବଦରେ କ୍ଷତି ପୂରଣ ।"

ପାଙ୍ଗୋ ଆଗରୁ ସିନା ଅଳସୁଆ ଥିଲା । ଏବେ ତା'ର ସତ୍‌କର୍ମ ଯୋଗୁ ଏତେଗୁଡ଼ିଏ ସମ୍ପତ୍ତି ରୋଜଗାର କରିଥିବାରୁ ସେ ନିଜେ ଖୁସି ଓ ତା' ଗ୍ରାମର ଲୋକେ ଖୁବ୍ ଖୁସି ହେଲେ ।

ସେହି ଦିନରୁ ମୟୂର ସର୍ବଦା ଚକ୍‌ଚକ୍ ପୋଷାକରେ ସାଜିଥିବାର ଦେଖାଯାଏ । ସେଥିପାଇଁ ତା' ଗର୍ବ କମ୍ ନୁହେଁ ।

ରାଜକୁମାର ସୁନ୍ଦର କଣ୍ଠରେ ଗୀତ ବୋଲିଲେ ଦ୍ୱୀପସାରା ବୁଲି ବୁଲି । ଦ୍ୱୀପର ଲୋକେ ତ ସୁଖୀ ଥିଲେ; ସେମାନେ ଏଣିକି ଆହୁରି ସୁଖୀ ହେଲେ ।





ଭାରତ-କାହାଣୀ

## ଜାହାଙ୍ଗୀର ଓ ଶାହ୍‌ଜାହାନ୍

ଆକ୍‌ବରଙ୍କ ମୃତ୍ୟୁ ପରେ ତାଙ୍କ ପୁଅ ସେଲିମ୍ ଜାହାଙ୍ଗୀର ନାମ ଧାରଣ କରି ୧୬୦୫ ରେ ମୋଗଲ ସିଂହାସନ ଆରୋହଣ କଲେ । ବିଳାସରେ ସମୟ କଟାଇବାକୁ ସେ ପସନ୍ଦ କରୁଥିଲେ । ଭାଗ୍ୟକୁ ଆକବର ଗୋଟିଏ ଦକ୍ଷ ଶାସନ ବ୍ୟବସ୍ଥା ଗଢ଼ି କରି ଯାଇଥିଲେ ।

ଜାହାଙ୍ଗୀର ମେହେରୁନ୍ନିସା ନାମକ ଜଣେ ବିଧବାଙ୍କୁ ବିବାହ କଲେ । ବିବାହ ପରେ ମେହେରୁନ୍ନିସାଙ୍କ ନାମ ହେଲା ନୂର୍‌ଜାହାନ୍ । କ୍ରମେ ଶାସନ କାଳ ଉପରେ ସେ ମହିଳା ପ୍ରବଳ ପ୍ରତିପତ୍ତି ବିସ୍ତାର କଲେ । ମୁଦ୍ରା ଉପରେ ଜାହାଙ୍ଗୀରଙ୍କ ସାଙ୍ଗକୁ ତାଙ୍କ ଛବି ମଧ୍ୟ ଅଙ୍କିତ ହେଲା ।





ହଠାତ୍ ଜାହାଙ୍ଗୀରଙ୍କ ଉଚ୍ଚାଭିଳାଷୀ ଜ୍ୟେଷ୍ଠ ପୁତ୍ର ଖୁସ୍ରୁ ପିତାଙ୍କ ବିରୁଦ୍ଧରେ ବିଦ୍ରୋହ କଲେ । ଖୁସ୍ରୁ ନିଜେ ସିଂହାସନ ଅଧିକାର କରିନେବାକୁ ଚାହୁଁଥିଲେ । ଜାହାଙ୍ଗୀର ଦକ୍ଷ ଯୋଦ୍ଧା ନ ହୋଇଥିବା ସତ୍ତ୍ୱେ ଖୁସ୍ରୁଙ୍କୁ ପଞ୍ଜାବ ଯାଏ ତଡ଼ି ନେଇଗଲେ ଓ ସେଠାରେ ତାଙ୍କୁ ବନ୍ଦୀ କଲେ । କାରାଗାରରେ ଖୁସ୍ରୁଙ୍କ ପ୍ରାଣ ଗଲା ।



ସେ ଯାହାହେଉ, ଜାହାଙ୍ଗୀର ନ୍ୟାୟ ବିଚାରର ପକ୍ଷପାତୀ ଥିଲେ । ସେ ନିଜ ଦୁର୍ଗ ଦ୍ୱାରରୁ ଯମୁନା ନଦୀ ପର୍ଯ୍ୟନ୍ତ ଗୋଟିଏ ଜଂଜିର ଲଗାଇଲେ । ସେଥିରୁ ଝୁଲୁଥାଏ ଷାଠିଏ ଗୋଟି ବିଶାଳ ଘଣ୍ଟା । ଯିଏ ସମ୍ରାଟଙ୍କ ପାଖରେ କିଛି ଗୁହାରି କରିବାକୁ ଚାହୁଁଥିଲା, ସେ ସେଥିରୁ ଗୋଟିଏ ଘଣ୍ଟା ବଜାଇ ଦେଲେ ସବୁ ଘଣ୍ଟା ବାଜୁଥିଲା ।

ସେତେବେଳେ ଇଙ୍ଗଲଣ୍ଡରେ ରାଜତ୍ୱ କରୁଥାନ୍ତି ରାଜା ପ୍ରଥମ ଜେମସ୍ । କ୍ୟାପଟେନ୍ ହକିନ୍ସ୍ ଓ ସାର୍ ଥୋମାସ ରୋ ନାମକ ଦୁଇଜଣ ଇଂରେଜ ପର ପର ଆସି ଜାହାଙ୍ଗୀରଙ୍କୁ ଭେଟିଲେ । ସେମାନେ ତାଙ୍କ ରାଜାଙ୍କ ଚିଠି ଧରି ଆସିଥାନ୍ତି । ଇଂରେଜମାନେ ବାଣିଜ୍ୟ ପାଇଁ ଅନୁମତି ଚାହୁଁଥିଲେ । ସାର୍ ଥୋମାସ ରୋ ଜାହାଙ୍ଗୀରଙ୍କଠାରୁ ଅନେକ ସୁବିଧା ଆଦାୟ କରିନେଲେ ।





ଜାହାଙ୍ଗୀରଙ୍କ ଶାସନ କାଳରେ ଅନ୍ୟ ବିଶେଷ ଘଟଣା ହେଲା ମେବାର ଉପରେ ମୋଗଲ ପ୍ରଭୁତ୍ୱ । ରାଣା ପ୍ରତାପ ନିଜ ସ୍ୱାଧୀନତା ରକ୍ଷା ପାଇଁ ଶେଷ ପର୍ଯ୍ୟନ୍ତ ଲଢ଼େଇ କରି ଜୀବନ ଦେଇଥିଲେ । ତାଙ୍କ ପୁତ୍ର ରାଣା ଅମରସିଂହ ସେପରି ଦୃଢ଼ମନା ବ୍ୟକ୍ତି ନ ଥିଲେ । ସେ ଜାହାଙ୍ଗୀରଙ୍କୁ ସମ୍ରାଟ ରୂପେ ସ୍ୱୀକାର କରି ତାଙ୍କର ବଶ ହେଲେ ।

ଜାହାଙ୍ଗୀରଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର
ଖୁର୍ରମ ଶାହଜାହାନ ନାମ ଗ୍ରହଣ କରି
ମୋଗଲ ସିଂହାସନ ଆରୋହଣ କଲେ ।
କିନ୍ତୁ ସେ ସିଂହାସନ ସେତେବେଳେ
ରକ୍ତସ୍ନାତ ହୋଇ କହିଲେ ଅତ୍ୟୁକ୍ତି ହେବ
ନାହିଁ । କାରଣ ତାଙ୍କ ସାନଭାଇ
ସାରିଆର ଓ ଅନ୍ୟ କେତେଜଣଙ୍କୁ ସେ
ହତ୍ୟା କରି ଗାଦିରେ ବସିଲେ ।
ଅନେକ ଅମାତ୍ୟ ମଧ୍ୟ ଦଣ୍ଡିତ ହେଲେ ।





ସାହଜାହାନ ମଧ୍ୟ ଅତ୍ୟନ୍ତ ବିଳାସପ୍ରିୟ
ଥିଲେ । ପ୍ରଚୁର ଅର୍ଥ ବ୍ୟୟ କରି ସେ
ବିଖ୍ୟାତ ମୟୂର ସିଂହାସନ ନିର୍ମାଣ କଲେ ।
ତେଣେ ତାଙ୍କ ରାଜ୍ୟ ଆକ୍ରମଣ କରି
ପାରସ୍ୟର ଶାହ କାନ୍ଦାହାର ଅଧିକାର
କରିନେଲେ । ଶାହଜାହାନ କାନ୍ଦା-
ହାର ଉଦ୍ଧାର ପାଇଁ ଚେଷ୍ଟା କଲେ,
କିନ୍ତୁ ପାରିଲେ ନାହିଁ । ତେବେ ବିଳାସ
ସଙ୍ଗେ ସଙ୍ଗେ ସେ କଳା ଓ ସ୍ଥାପତ୍ୟ
ଭଲ ପାଉଥିଲେ ।

ଦିଲ୍ଲୀର ବିଖ୍ୟାତ ଲାଲକିଲ୍ଲା ସମେତ ବହୁ
ସ୍ମରଣୀୟ ଇମାରତ୍ ତାଙ୍କ ପୃଷ୍ଠ-
ପୋଷକତାରେ ନିର୍ମିତ ହେଲା ।
ଲାଲକିଲ୍ଲା ଭିତରେ ଅବସ୍ଥିତ ଦିୱାନ-
ଇ-ଖାସର କାନ୍ଥରେ ସେ ଲେଖାଇଲେ:
"ପୃଥିବୀ ଉପରେ ଯଦି କେଉଁଠି ସ୍ୱର୍ଗ
ଥାଏ, ତେବେ ତାହା ଏଇଠି,
ଏଇଠି, ଏଇଠି !" ଲାଲକିଲ୍ଲା ଏକ
ଐତିହାସିକ ଦୁର୍ଗ ରୂପେ ରହିଛି ।






ଶାହଜାହାନଙ୍କ ମୁଖ୍ୟ ରାଣୀ ଥିଲେ ମମତାଜ ମହଲ । ସମ୍ରାଟଙ୍କ ଉପରେ ତାଙ୍କର ଅସାଧାରଣ ପ୍ରଭାବ ଥିଲା । ଚାରି ରାଜପୁତ୍ରଙ୍କର ସେ ଜନନୀ ଥିଲେ । ସେମାନେ ହେଲେ ଦାରା, ସୁଜା, ଆଉରଙ୍ଗଜେବ ଏବଂ ମୁରାଦ । ଶାହଜାହାନଙ୍କ ଜୀବନରେ ସରସତା ଓ ଉତ୍ସାହର ଉତ୍ସ ଥିଲେ ମମତାଜ ।

କିନ୍ତୁ ମମତାଜ ଅକାଳ ମୃତ୍ୟୁ ବରଣ କଲେ । ଶାହଜାହାନ ସେ ଦୁଃଖରେ ଭାଙ୍ଗି ପଡ଼ିଲେ । ମମତାଜଙ୍କ ସମାଧି ଉପରେ ସେ ନିର୍ମାଣ କଲେ ସୁବିଖ୍ୟାତ ଇମାରତ୍ ତାଜମହଲ । ଶଙ୍ଖମଲମଲ ପ୍ରସ୍ତରରେ ନିର୍ମିତ ଏହି ସୌଧ ପୃଥିବୀର ସବୁଠାରୁ ସୁନ୍ଦର ଇମାରତ୍ ମାନଙ୍କ ମଧ୍ୟରେ ଅନ୍ୟତମ ବୋଲି ପରିଚିତ ।







ଶାହଜାହାନଙ୍କ ଶେଷ ଜୀବନ ଥିଲା ବିଷାଦମୟ । ଆଉରଙ୍ଗଜେବ୍ ତାଙ୍କର ଅନ୍ୟ ତିନିଭାଇଙ୍କୁ ସିଧାସଳଖ ଭାବରେ ବା ବିଶ୍ୱାସଘାତକତା କରି ହତ୍ୟା କଲେ । ଅସୁସ୍ଥ ଶାହଜାହାନଙ୍କୁ ସେ ଆଗ୍ରା ଦୁର୍ଗରେ ବନ୍ଦୀ କଲେ । ଶାହ-ଜାହାନ ଯମୁନା ସେପାରି ତାଜମହଲ ଆଡ଼େ ଅନାଇ ପଡ଼ିଥାନ୍ତି । କନ୍ୟା ଜାହାନାରା ତାଙ୍କ ସେବା କରୁଥାନ୍ତି । ୧୬୬୬ ରେ ତାଙ୍କର ମୃତ୍ୟୁ ହେଲା ।



ଦେଖାଉଛୁ! କଥା କ'ଣ?" ସୌଦାଗର ହଠାତ୍ ପଚାରିଦେଲେ ।

କମାଲ୍ ଚମକି ପଡ଼ିବା ଭଳି ଭାବ ଦେଖାଇ ମୁଣ୍ଡ ତଳକୁ କଲା ।

"କରେ, କଥା କ'ଣ କହୁନୁ?" ପଚାରିଲେ ସୌଦାଗରଙ୍କ ସ୍ତ୍ରୀ ।

"ବାବୁ, ଆପଣ କପରି ଜାଣିଲେ?" ଧୀରେ ଧୀରେ ମୁଣ୍ଡ ଉଠାଇ କମାଲ୍ ସୌଦାଗରଙ୍କୁ ପଚାରିଲା ।

"କ'ଣ କପରି ଜାଣିଲି?"

"ମୁଁ ପକ୍ଷୀମାନଙ୍କ କଥା ବୁଝିପାରେଁ ବୋଲି?" ନିରୀହ କଣ୍ଠରେ ପ୍ରଶ୍ନ କଲା କମାଲ୍ ।

ସୌଦାଗର ଆଶ୍ଚର୍ଯ୍ୟ ହୋଇ ଟୋକା ଆଡ଼େ ଅନାଇଲେ । "କ'ଣ କହିଲୁ? ତୁ ପକ୍ଷୀଙ୍କ କଥା ବୁଝିପାରୁ? କହିଲୁ ଦେଖି ସେ କାଉ କ'ଣ ବୁଝାଉଛି?"

କା କା କରୁଥିବା କାଉଟି ଆଡ଼େ ଅନାଇ କମାଲ୍ କହିଲା, "ବାବୁ, ସେ କହୁଛି ସେ ପୁରୁଣା ଗଛ ତଳେ ଗୋଟିଏ ବଡ଼ ବୋତଲରେ ଅଙ୍ଗୁର-ମଦ ପୋତା ହୋଇ ରହିଛି ।"

"ତୋ ମୁଣ୍ଡ ଖରାପ ହେଲାଣି!" ହସି ହସି ସୌଦାଗରଙ୍କ ସ୍ତ୍ରୀ କହିଲେ ।

"ହୋଇଥାଇ ପାରେ!" ନମ୍ର ଭାବରେ କହିଲା କମାଲ୍ । କିନ୍ତୁ ମୁଁ ସତ କହୁଛି ।"

"ସତେ? ଦେଖିବା କାଉ କେତେ ସତ କହୁଛି ବା ତୁ କେତେ ସତ ବୁଝୁଛୁ!" ଏହା କହି ସୌଦାଗର ଗଛ ତଳ ଖୋଳାଇଲେ । ସତକୁ ସତ ବୋତଲେ ଅଙ୍ଗୁର-ମଦ ବାହାରିଲା ।

ସୌଦାଗର, ତାଙ୍କ ସ୍ତ୍ରୀ ଓ କନ୍ୟାଙ୍କ ବିସ୍ମୟର ସୀମା ରହିଲା ନାହିଁ । ସେତିକି-ବେଳେ ଗୋଟାଏ ଛୋଟିଆ ପକ୍ଷୀ ସେମାନଙ୍କ ମୁଣ୍ଡ ଉପରେ ଥରେ ଚକ୍କର କାଟି କିଚିରି-ମିଚିରି କରି ଚାଲିଗଲା ।

"ଆଛା ବାପା, କହିଲୁ ଏ ପକ୍ଷୀ କ'ଣ କହିଲା!" ସୌଦାଗରଙ୍କ ସ୍ତ୍ରୀ ପଚାରିଲେ ।



"ଇଏ କହୁଛି ସେ ପାଖର ସେ ବୁଢ଼ା ଗଛ ଉପରେ ଗୋଟାଏ ଚଢ଼େଇ ବସା ଭିତରେ ସୁନା ମୁଦିଟିଏ କୁଆଡ଼େ ଅନ୍ୟ ଗୋଟାଏ ପକ୍ଷୀ କାହୁଁ ଉଠାଇ ନେଇଆସି ଥୋଇଛି!" କମାଲ୍ ଉତ୍ତର ଦେଲା ।

ସୌଦାଗର ସଙ୍ଗେ ସଙ୍ଗେ ଜଣେ ମାଲିକୁ ଡାକି ଗଛ ଚଢ଼ାଇଲେ । ସତକୁ ସତ ନୀଡ଼ ଭିତରୁ ସେ ସୁନାମୁଦିଟିଏ ପାଇ ତାକୁ ଧରି ଓହ୍ଲାଇ ଆସିଲା!

ସୌଦାଗର, ତାଙ୍କ ସ୍ତ୍ରୀ ଓ କନ୍ୟା ବିସ୍ମୟରେ ଅନେକ ସମୟ ପର୍ଯ୍ୟନ୍ତ କଥା କହି ପାରିଲେ ନାହିଁ । ସେମାନେ ବଲବଲ କରି କମାଲ୍ ଆଡ଼େ ଅନାଉଥାନ୍ତି । କମାଲ୍ ଲଜ କଲାଭଳି ଭାବ ଦେଖାଇ ମୁଣ୍ଡ ତଳକୁ କରି ଠିଆ ହୋଇଥାଏ ।

ସୌଦାଗର ସଙ୍ଗେ ସଙ୍ଗେ କମାଲ୍‌କୁ କୁଣ୍ଢାଇ ପକାଇ କହିଲେ, "ଆରେ କମାଲ୍! ତୋ ଭିତରେ ଏତେ ବିଦ୍ୟା ଅଛି ବୋଲି ତୁ ଆଜିଯାଏ କହି ନଥିଲୁ! ମୋ ଭାଗ୍ୟ ଭଲ କ୍ରୀତଦାସ ହାଟରୁ ତୋତେ ଯେତେବେଳେ କିଣିଲି ସେତେବେଳେ ତୋ ବିକ୍ରେତା ତୋର ଏ ଗୁଣକଥା ଜାଣି ନଥିଲା । ଜାଣିଥିଲେ ସେ ତୋ ପାଇଁ କେତେ ଦାମ୍ ଆଦାୟ କରିଥାନ୍ତା କିଏ କହିବ?"

ଦୁଇଦିନ ପରେ ପୁଣି ସୌଦାଗର ତାଙ୍କ ସ୍ତ୍ରୀ ଓ କନ୍ୟାଙ୍କୁ ଧରି ବଗିଚ୍ଚ ବୁଲି ବାହାରିଲେ । ସାଥିରେ ଥାଏ କମାଲ୍ । ସେମାନଙ୍କ ପାଖର ଗୋଟାଏ ଗଛରୁ ଦୁଇଟି ପକ୍ଷୀ ଏକ ସାଙ୍ଗରେ ସିଠି ଛାଡ଼ିଲେ ।

"ବାସ୍, ବାସ୍, ପାଟି କରନା, ଅଭଦ୍ର ଗୁଡ଼ାକ!" କମାଲ୍ ଯେପରି ସେ ପକ୍ଷୀମାନଙ୍କୁ କହିଲା । "କ'ଣ କରେ? ସେମାନେ କ'ଣ କହୁଛନ୍ତି?" ସୌଦାଗର ପଚାରିଲେ ।

"ଛାଡ଼ନ୍ତୁ ସେ ପାଗଳଙ୍କ କଥା । ମୋତେ ଦୟାକରି ପଚାରନ୍ତୁ ନାହିଁ ।" କମାଲ୍ ଭୟଭୀତ ଭାବରେ ଉତ୍ତର ଦେଲା ।

"ଆରେ କହ କହ । ଆମ ପାଖରେ ସଙ୍କୋଚ କାହିଁକି?" ସୌଦାଗରଙ୍କ ସ୍ତ୍ରୀ ଜିଗର କରି କହିଲେ ।

"ମୋତେ ମାଫ୍ କରନ୍ତୁ । ଏ ଦୁଇପକ୍ଷୀଙ୍କ କଥା ମୁଁ କହିପାରିବ ନାହିଁ କି କହିଲେ ଆପଣମାନେ ମୋତେ ପ୍ରାଣରେ ରଖିବେ ନାହିଁ ।" କମାଲ କାକୁସ୍ତ ସ୍ୱରରେ ଜଣାଇଲା ।

"ତୋର ଭୟ ନାହିଁ । ମୁଁ ଜବାବ୍ ଦେଉଛି, ତୁ ଯାହା କହିଲେ ବି ତୋତେ ମୁଁ କୌଣସି ଦଣ୍ଡ ଦେବି ନାହିଁ ।" ସୌଦାଗର ଦୃଢ଼ କଣ୍ଠରେ କହିଲେ ।

"ବାବୁ, ଏ ପକ୍ଷୀ ଦୁଇଟି କହୁଛନ୍ତି, ଆପଣଙ୍କ ପରିବାର ଉପରେ ଗୋଟାଏ ଭୀଷଣ ବିପଦ ପଡ଼ିବାର ଅଛି । ହୁଏତ କନ୍ୟାଟି ମରିଯାଇ ପାରେ…"

"ଆଁ !" ସୌଦାଗରଙ୍କ ସ୍ତ୍ରୀ କାନ୍ଦି ଉଠିଲେ ।

"ତେବେ ସେ ବିପଦରୁ ରକ୍ଷା ପାଇବାକୁ ହେଲେ ତାକୁ ମୋ ହାତରେ ଛଡ଼ିବାକୁ ପଡ଼ିବ !" କମାଲ ସଙ୍କୋଚ ଦେଖାଇ କହିଲା ।

ସୌଦାଗରଙ୍କ ସ୍ତ୍ରୀ ଆଶ୍ୱସ୍ତ ହେଲେ । ସୌଦାଗର ଟିକିଏ ଗମ୍ଭୀର ହୋଇ ସ୍ତ୍ରୀଙ୍କୁ କହିଲେ, "କ୍ଷତି କ'ଣ ? କମାଲ୍ କେଉଁ ଗୁଣରେ କାହାଠୁଁ କମ୍ ? ସେ କ୍ରୀତଦାସ । କିନ୍ତୁ ଥରେ ସେ ଆମ ଜାମାତା ହେଲେ ତା'ର ଇତିହାସ କିଏ ମନେ ରଖିବ ? ସେ ମୋର ଉତ୍ତରାଧିକାରୀ, ଏହାହିଁ ହେବ ତା'ର ଶ୍ରେଷ୍ଠ ପରିଚୟ !"

"ତେବେ ବିଳମ୍ବ କରନାହିଁ । ବିପଦ କେତେବେଳେ ପଡ଼ିବ କିଏ କହିବ ! ଯଥାଶୀଘ୍ର ବାହାଘର ହୋଇଯାଉ । ଝିଅର ଜୀବନହିଁ ବଡ଼ କଥା !" ସୌଦାଗରଙ୍କ ସ୍ତ୍ରୀ କହିଲେ ।

ବିବାହ ହୋଇଗଲା ।

କହିବା ବାହୁଲ୍ୟ ଅଙ୍ଗୁର ମଦର ବୋତଲ ଓ ସୁନାମୁଦ କମାଲ୍ ତା'ର ସବୁ ସଞ୍ଚୟ ଠୁଳ କରି କିଣିଥିଲା ଓ ଯଥା ସ୍ଥାନରେ ରଖିଥିଲା । ତା'ର ସେ ବିନିଯୋଗ ବ୍ୟର୍ଥ ହେଲା ନାହିଁ !






# ହୃଦ୍‌ରୋଗ ନିରାକରଣ

ରତ୍ନପୁରର ଜମିଦାର ବଙ୍କିମଚନ୍ଦ୍ର ହଠାତ୍ ହୃଦ୍‌ରୋଗରେ ଆକ୍ରାନ୍ତ ହେଲେ । ତାଙ୍କର ଅସୁସ୍ଥତାର ଖବର ପାଇ ତାଙ୍କ ଭଣଜା ଶିବନାଥ ତାଙ୍କୁ ଦେଖିବାକୁ ଆସିଲେ । ଶିବନାଥଙ୍କ ସହ ତାଙ୍କ ବନ୍ଧୁ ସୁରେଶ ମଧ୍ୟ ଆସିଥା'ନ୍ତି ।

ଭଣଜାର ଭକ୍ତିରେ ମାମୁଁ ଖୁବ୍ ମୁଗ୍ଧ ହେଲେ । କିନ୍ତୁ ମାମୁଁଙ୍କ ଅବସ୍ଥା ଦେଖି ଶିବନାଥ ବହୁତ ବ୍ୟସ୍ତ ହେଲେ । କାରଣ ସେ ଅଞ୍ଚଳର ସମସ୍ତ ବୈଦ୍ୟ, କବିରାଜ ଲଗିଥିଲେ ମଧ୍ୟ ମାମୁଁଙ୍କ ରୋଗର ଉପଶମ ହେଉନାହିଁ । ସେଥିପାଇଁ ଶିବନାଥ ଟିକିଏ ଚିନ୍ତିତ ଥାନ୍ତି ।

ମାମୁଁଙ୍କର ମନ ଭୁଲେଇବା ପାଇଁ ସେ ମାମୁଁଙ୍କ ପାଖରେ ବସି ନାନା ପ୍ରକାର ଗପ କହୁଥା'ନ୍ତି । ଶିବନାଥଙ୍କ ସହ କଥାବାର୍ତ୍ତା କରି ବଙ୍କିମଚନ୍ଦ୍ର ଟିକିଏ ହାଲୁକା ଅନୁଭବ କଲେ । କଥା ପ୍ରସଙ୍ଗରେ ସେ ଭଣଜାଙ୍କୁ ପଚାରିଲେ, "ଆରେ, ଚନ୍ଦ୍ରନାଥର ଖବର ତ ତୁ କିଛି କହିଲୁ ନାହିଁ ? ତା'ର ଏ ବର୍ଷ କିପରି ଫସଲ ହୋଇଛି ? ଶୁଣିଲି ଭଲ ହୋଇଛି ।"

"ଆଶ୍ଚର୍ଯ୍ୟ ! ତାଙ୍କର ଭଲ ଫସଲ ହୋଇଛି କିଏ କହିଲା ? ତାଙ୍କର ସବୁ କ୍ଷେତ ଉଜୁଡ଼ିଗଲା । ଏବର୍ଷ ଯେ ସେ ଘରେ ମୁଣ୍ଡରେ ହାତ ଦେଇ ବସିଛନ୍ତି । ଆଗରୁ ପଇସା ଜୋର୍‌ରେ କଥା କଥାକେ ସିଂହ ପରି ଗର୍ଜନ କରୁଥାନ୍ତି । ଆଜି ଏବେ ? ଘର ଭିତରେ ବସି ରାମନାମ ଜପୁଛନ୍ତି ।" ଶିବନାଥ କହିଲେ ।

ଏକଥା ଶୁଣି ବଙ୍କିମଚନ୍ଦ୍ର ବିଛଣାରୁ ଉଠି ବସିଲେ ଓ କହିଲେ, "ସତକଥା କହୁଛୁ ? ଯାହାହେଉ, ବିଚାରା କଷ୍ଟ ପାଉଛି ।"




"କଷ୍ଟ ପାଇବ? କ'ଣ କହୁଛନ୍ତି। ଯାହା ହୋଇଛି ଠିକ୍ ହୋଇଛି। କେତେ ଗରିବଙ୍କ ଘର ଭାଙ୍ଗି, ତଣ୍ଟି ଚିପି ପଇସା ମାରିଛି। ସମସ୍ତଙ୍କ ଅଭିଶାପ ଫଳିଲା।" ଶିବନାଥ କହିଲେ।

ଭଣଜା ମୁହଁରୁ ଚନ୍ଦ୍ରନାଥଙ୍କ ନିନ୍ଦା ଶୁଣି ବିକ୍ରମବାବୁଙ୍କ ମନକୁ ଖୁବ୍ ଶାନ୍ତି ମିଳିଲା। ସେ ଶିବନାଥଙ୍କୁ ମନ ଭିତରେ ଆଶୀର୍ବାଦ କରି କହିଲେ, "ପୁଅ, ତୁ ଆସିଲୁ ବଡ଼ ଭଲ ହେଲା। ତୋଠାରୁ ସବୁ ଖବର ବି ମିଳିଲା। କଥାବାର୍ତ୍ତା କରି ମନଟା ମଧ୍ୟ ହାଲ୍କା ଲାଗିଲା।"

ଟିକଏ ରହି ପୁଣି ସେ କହିଲେ, "ଆରେ, ହଁ ଆଉ ଗୋଟିଏ କଥା ପଚାରିବି ବୋଲି ଭୁଲି ଯାଉଛି। ଶୁଣିଲି ଚନ୍ଦ୍ରନାଥର ଝିଅ ରମାର ବିବାହ ପ୍ରସ୍ତାବ ରାମଗଡ଼ର ପ୍ରସିଦ୍ଧ ଜମିଦାର ବିଜୟ ସିଂହଙ୍କ ଘରେ ହୋଇଛି। ଭଗବାନ୍ଙ୍କ କୃପାରୁ ଶୀଘ୍ର କନ୍ୟାଦାୟରୁ ମୁକ୍ତ ହୋଇଯାଉ ବିଚରା।"

ଶିବନାଥ ନାକ ଟେକି କହିଲା, "ରାମ, ରାମ, କିଏ ଏସବୁ କଥା ଆପଣଙ୍କୁ କହୁଛି? ଜ୍ୟୋତିଷ ତ କହି ଦେଇଛି କି ଏ କନ୍ୟାର କପାଳରେ ବିବାହ ଯୋଗ ଆଦୌ ନାହିଁ। ଚନ୍ଦ୍ରନାଥଙ୍କର ଯେତେ ଧନ ଥିଲେ କ'ଣ ହେବ?"

କଥାବାର୍ତ୍ତା କରୁ କରୁ ବିକ୍ରମବାବୁ ବହୁତ ସୁସ୍ଥ ଅନୁଭବ କଲେ। ତାଙ୍କ ଚେହେରାରେ ଏକ ସନ୍ତୋଷ ଭାବ ଦେଖାଦେଲା। କିନ୍ତୁ ଶିବନାଥର ଏପରି ସବୁ ମିଛ କଥା କହିବା ଦେଖି ସୁରେଶ ଆଶ୍ଚର୍ଯ୍ୟ ହୋଇଗଲେ।

କିଛି ସମୟ ପରେ ଦୁହେଁ ନିଜ ଗ୍ରାମକୁ ଫେରିଗଲେ। ବାଟରେ ସୁରେଶ ପଚାରିଲେ, "ଭାଇ ଶିବନାଥ, ତୁ ଗୋଟାଏ ନିପଟ ମୂର୍ଖ। ତୋର ମାମୁଁ ତାଙ୍କ ବନ୍ଧୁ ଜମିଦାରଙ୍କ କଥା ପଚାରୁଥିଲେ। ଏପରି ଅବସ୍ଥାରେ ତାଙ୍କୁ କୁଶଳ ସମ୍ବାଦ ଦେବା ପରିବର୍ତ୍ତେ ସବୁତକ ଖରାପ ସମ୍ବାଦ ଓ ମିଥ୍ୟା ସମ୍ବାଦ ତୁ କାହିଁକି ଦେଲୁ?"

ଶିବନାଥ ହସିଲେ, କିନ୍ତୁ କିଛି କହିଲେ ନାହିଁ। ସୁରେଶ କହି ଚାଲିଲେ, "କ'ଣ ତୁ ଜାଣୁନାହିଁ ଯେ ଏବର୍ଷ ତାଙ୍କର ସବୁଠାରୁ ଭଲ ଫସଲ ହୋଇଛି ଓ ତାଙ୍କ ଝିଅର





ବାହାଘର ସବୁଠାରୁ ବଡ଼ ଜମିଦାର ଘରେ ହେଉଛି ବୋଲି ?"

"ମୁଁ ଜାଣେ । ସବୁ ଜାଣେ । କିନ୍ତୁ ତୁ ମୋ ମାମୁଁଙ୍କ କଥା କିଛି ଜାଣୁନାହିଁ । ଦେଖିଲୁନି କି ମୋ କଥା ଶୁଣି ସେ କେତେ ଖୁସି ହେଲେ ଓ ବିଛଣା ଉପରେ ଉଠି ବସିଲେ ? ଏବେ ମାମୁଁ ଶୀଘ୍ର ଭଲ ହୋଇଯିବେ; ଶିବନାଥ କହିଲେ ।

"ହଁ ତ ! କିନ୍ତୁ କାରଣ କ'ଣ ? ମୋତେ ଖୋଲଖୋଲି ଭାବରେ ସବୁ ବୁଝାଇ ଦେଉନାହୁଁ କାହିଁକି ?" ସୁରେଶ କହିଲେ ।

ଶିବନାଥ କହିଲେ, "କଥା କ'ଣ କି ମୋ ମାମୁଁ ଓ ଚନ୍ଦ୍ରନାଥ ଏ ଅଞ୍ଚଳରେ ସବୁଠାରୁ ବଡ଼ ଜମିଦାର । କିନ୍ତୁ ଆରମ୍ଭରୁହିଁ କେହି କାହାର ଭଲ ଦେଖିପାରନ୍ତି ନାହିଁ । ଚନ୍ଦ୍ର-ନାଥଙ୍କ ଭଲ ଫସଲ ହେବା ଓ ଝିଅ ବାହା ଦେବା କଥା ଶୁଣିହିଁ ମୋ ମାମୁଁଙ୍କୁ ହୃଦ୍‌ରୋଗ ଆକ୍ରମଣ କରୁଛି । ସତ କହିବାକୁ ଗଲେ ଚନ୍ଦ୍ରନାଥର କିଛି ଭଲ ଶୁଣିଲେ ତାଙ୍କ ହୃଦ୍‌ସ୍ପନ୍ଦନ କ୍ଷୀଣ ହୋଇଯାଏ ।

ଏକଥା ଶୁଣି ସୁରେଶ ଆଶ୍ଚର୍ଯ୍ୟ ହେଲେ, ତଥାପି ବନ୍ଧୁଙ୍କ କଥାକୁ ସମ୍ପୂର୍ଣ୍ଣ ବିଶ୍ୱାସ କରିପାରିଲେ ନାହିଁ ।

ଥରେ ସେ କୌଣସି କାମରେ ଛତ୍ରପୁର ଯାଇଥିଲେ । ଶିଷ୍ଟାଚାରବଶତଃ ସେ ବିକ୍ରମ-ବାବୁଙ୍କୁ ଦେଖିବାକୁ ଗଲେ । ସେଠାରେ ଯାଇ ଦେଖିଲେ କି ବିକ୍ରମବାବୁ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ପୂରା କାମଦାମ କରୁଛନ୍ତି ।

ଏସବୁ ଦେଖି ସୁରେଶଙ୍କର ପୂରା ବିଶ୍ୱାସ ଆସିଥିଲା କି ଶିବନାଥ ଯାହା କହୁଥିଲେ ଠିକ୍ । ନିଜର ରାଗ ଓ ଦ୍ୱେଷହିଁ ତାଙ୍କର ହୃଦ୍‌ରୋଗର କାରଣ ।

ସେ ସେଠାରୁ ଫେରି ନିଜ ଗ୍ରାମକୁ ଯାଇ ଶିବନାଥକୁ କହିଲେ, "ଭାଇ, ତୁମ ଔଷଧରେ ତୁମ ମାମୁଁ ଏବେ ବିଲ୍‌କୁଲ୍ ଠିକ୍ ହୋଇ ଯାଇଛନ୍ତି ।





# ନାରୀର ପ୍ରିୟତମ ବସ୍ତୁ

ଦିନେ ସନ୍ଧ୍ୟାରେ ରାଜା ରାଣୀଙ୍କ ସହିତ ବଗିଚାରେ ବୁଲୁଥିଲେ । ସେତେବେଳେ ରାଣୀ ରାଜାଙ୍କୁ ପଚାରିଲେ, "ମହାରାଜ, କହି-ପାରିବେ କି ନାରୀର ପ୍ରିୟତମ ବସ୍ତୁ କ'ଣ ?"

ରାଜା ବଗିଚାର ଫୁଲ ଉପରେ ଆଖି ବୁଲାଇ ଆଣି ଅଳ୍ପ ହସି ଉତ୍ତର ଦେଲେ, "ଫୁଲ" ।

"ନାଁ" ରାଣୀ ହସି ହସି କହିଲେ ।

"ସ୍ୱାମୀ ଓ ପିଲା" ରାଜା କହିଲେ ।

"ନାଁ" ରାଣୀ କହିଲେ ।

"ଶାଢ଼ୀ ଓ ଅଳଙ୍କାର" ରାଜା କହିଲେ ।

"ନାଁ । କଦାପି ନୁହେଁ ।"

ରାଜା ରାଣୀଙ୍କର ମନକଥା ଜାଣିବା ପାଇଁ ଅତ୍ୟନ୍ତ ଆଗ୍ରହୀ ହୋଇ ପଡିଲେ । ତେଣୁ ସେ ରାଜ୍ୟରେ ଘୋଷଣା କଲେ କି ଯିଏ ରାଣୀଙ୍କ ପ୍ରଶ୍ନର ସଠିକ୍ ଉତ୍ତର ଦେଇ ପାରିବ ତାକୁ ଏକହଜାର ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ମିଳିବ ।

ପରଦିନହିଁ ଦେଖାଗଲା ରାଜାଙ୍କ ଦରବାରରେ ଖୁବ୍ ଭିଡ଼ । ରାଜା ସେମାନଙ୍କୁ କହିଲେ, "ଯା'ର ଉତ୍ତର ଠିକ୍ ନ ହେବ ସେ ଦଶଥର ଚାବୁକ୍ ମାଡ଼ ଖାଇବ ।"

ଏକଥା ଶୁଣି ସମସ୍ତେ ଛନିଆରେ ପଳାଇଲେ । ରାଜା ଏସବୁ ଦେଖି ରାଗିଗଲେ ଓ ଘୋଷଣା କଲେ କି ଆସନ୍ତା କାଲି ରାଜମହଲରୁ ଗୋଟିଏ ପାରକୁ ଉଡ଼ାଇ ଦିଆଯିବ । ସେ ଯାଇ ଯାହା ଘର ଉପରେ ବସିବ ତା'ରହିଁ ଉତ୍ତର ଦେବାର ପାଳି । ସେ ସଠିକ୍ ଉତ୍ତର ଦେଇ ନ ପାରିଲେ ମୁଣ୍ଡ କାଟ ହେବ । ଏସବୁ ଉଦ୍ଭଟ କଥା ଶୁଣି ଲୋକେ ଭୟରେ କାତର ହେଲେ ।

ପରଦିନ ପାରକୁ ଛଡ ଦିଆଗଲା । ସେ ଉଡି ଉଡ଼ି ଯାଇ ଏକ ଘର ଉପରେ ବସିଲା । ପାର ସହିତ ଯାଉଥିବା ରାଜକର୍ମଚାରୀମାନେ

ସେ ଘରେ ପ୍ରବେଶ କରି ଦେଖିଲେ ସେଇଟା ଗୋଟିଏ କେଉଟର ଘର । କେଉଟ ଘରେ ନଥିଲା; ତା' ପୁଅ ବସି ଜାଲ ବୁଣୁଥିଲା । ରାଜକର୍ମଚାରୀମାନେ ତାକୁ ଧରନେଇ ରାଜାଙ୍କ ପାଖରେ ହାଜର କରାଇଲେ ।

ରାଜା ତାକୁ ସମସ୍ତ ଘଟଣା କହି ରାଣୀଙ୍କ ପ୍ରଶ୍ନର ଉତ୍ତର ପଚାରିଲେ । ସେ ବାଳୁରା ଭୟରେ ଥରି ଥରି କହିଲା, "ମହାରାଜ, ଏ ପ୍ରଶ୍ନ ବହୁତ କଠିନ । ଭାବଚିନ୍ତି କହିବାକୁ ସମୟ ଲାଗିବ । ପନ୍ଦରଦିନ ସମୟ ଦିଅନ୍ତୁ ।"

ରାଜା ତାକୁ ସମୟ ଦେଲେ ।

ପନ୍ଦର ଦିନ ମଧ୍ୟରେ କେଉଟ ପୁଅଟି ବହୁତ ଲୋକଙ୍କ ସହ ଦେଖା କଲା ପ୍ରଶ୍ନର ଉତ୍ତର ପାଇବା ପାଇଁ । କେତେ ସ୍ତ୍ରୀ ଲୋକଙ୍କ ସହିତ ଦେଖାକରି ମଧ୍ୟ ପ୍ରଶ୍ନ ପଚାରୁଥାଏ । ସେମାନେ ସାଧାରଣ ଉତ୍ତର ଦେଉଥା'ନ୍ତି ।

ସେ ଭାବିଲା ଏପରି ସାଧାରଣ ଉତ୍ତର ପାଇଁ କଦାପି ରାଜା ଏପରି ଘୋଷଣା କରନ୍ତେ ନାହିଁ । ଏଥିମଧ୍ୟରେ କିଛି ଗୁଢ଼ ରହସ୍ୟ ରହିଛି । କ୍ରମେ ଦିନ ନିକଟ ହୋଇ ଆସୁଛି । ଅଥଚ ସେ ମନୋମତ ଉତ୍ତରଟିଏ ଏପର୍ଯ୍ୟନ୍ତ ଯୋଗାଡ଼ କରି ପାରିନି । ମୃତ୍ୟୁ ଯେ ସୁନିଶ୍ଚିତ ଏକଥା ଭାବି ଦୁଃଖରେ ସେ ଭାଙ୍ଗି ପଡ଼ିଲା ।

ଆଉ ମାତ୍ର ଦିନେ ଅଛି । ସେ ଦୁଃଖରେ ଗୋଟିଏ ପୋଖରୀ କୂଳରେ ବସିଥାଏ । ସେଇ ରାସ୍ତାରେ ବୁଢ଼ୀଟିଏ ଯାଉଥାଏ । ସେ କେଉଟ ପୁଅକୁ ଏପରି ଉଦାସ ହୋଇ ବସିଥିବାର ଦେଖି ପଚାରିଲା, "ପୁଅ, ତୋ'ର ଦୁଃଖ କାହିଁକି ?"



ସେ ସବୁକଥା ବୁଢ଼ୀକୁ ଶୁଣାଇଲା ।

"ମୁଁ ମଧ୍ୟ ଢେଙ୍କୁରା ଦିଆଯିବା ବେଳେ ଏକଥା ଶୁଣିଥିଲି । ସେ ଘୋଷଣା ମଧ୍ୟରେହିଁ ରାଣୀଙ୍କ ପ୍ରଶ୍ନର ଉତ୍ତର ଅଛି । ସେଥିପାଇଁ ଏତେ ଚିନ୍ତା କରିବାର ଦରକାର କ'ଣ ?"

ପୁଅଟି ବହୁତ ଖୁସି ହୋଇଯାଇ କହିଲା, "ଆଈ, ମୋତେ ଟିକିଏ ସବୁକଥା ସଫାକରି ବୁଝାଇ ଦିଅ ତ !"

"ରାଜା ସାରା ରାଜ୍ୟକୁ ଚଳାଉଛନ୍ତି କିନ୍ତୁ ତାଙ୍କୁ ଚଳାଉଛନ୍ତି ରାଣୀ । ଏ କଥାକୁ ପ୍ରମାଣ କରିବାକୁହିଁ ରାଣୀ ଏପରି ପ୍ରଶ୍ନ କରିଛନ୍ତି ।" ଏତିକି କହି ବୁଢ଼ୀ ବାଡ଼ି ଠୁକ୍ ଠୁକ୍ କରି ଚାଲିବାକୁ ଲାଗିଲା । କେଉଟପିଲା ଦୌଡ଼ି ଦୌଡ଼ି ବୁଢ଼ୀ ପାଖକୁ ଆସି କହିଲା, "ଆଈ, ଆଈ, ଭଲକରି ମୋତେ ଟିକିଏ ବୁଝାଇ ଦିଅ ।"

"ଆରେ ପାଗଳ, ଦେଖିପାରୁନୁ କି ରାଜା ରାଣୀଙ୍କ ପ୍ରଶ୍ନକୁ ନେଇ କେତେ ବ୍ୟସ୍ତ; ଆଉ ରାଣୀ ମନେ ମନେ ଖୁସି ହୋଇ ବସିଛନ୍ତି ? ନିଜ ସ୍ୱାମୀ ଉପରେ ହୁକୁମ ଜାରି କରିବାରେ ସ୍ତ୍ରୀର ଯେଉଁ ଆନନ୍ଦ, ସେ ଆନନ୍ଦ ସେ ଆଉ କେଉଁଥିରୁ ବି ପାଏ ନାହିଁ । ବୁଝିଲୁ ଏବେ ?" ଏତିକି କହି ବୁଢ଼ୀ ଚାଲିଗଲା ।

ପରଦିନ କେଉଟପିଲା ଦରବାରକୁ ଗଲା । ରାଜା ପ୍ରଶ୍ନଟି ଆଉ ଥରେ ପଚାରିଲେ । କେଉଟ ପିଲା ଡରି ନ ଯାଇ ସ୍ଥିର ନିଶ୍ଚିନ୍ତତାର ସହିତ ଉତ୍ତର ଦେଲା, "ନିଜର ସ୍ୱାମୀ ଉପରେ ହୁକୁମ ଜାରି କରିବା ନାରୀର ସର୍ବାପେକ୍ଷା ଅଧିକ ପ୍ରିୟ ବସ୍ତୁ । ରାଣୀଙ୍କୁ ପଚାରନ୍ତୁ ମୁଁ ଠିକ୍ କହୁଛି ନା ନାହିଁ ।"

ରାଜା ରାଣୀଙ୍କୁ ପଚାରିଲେ ଓ ରାଣୀ ହସି ହସି ନିଜର ସମ୍ମତି ଜଣାଇଲେ ।

ରାଜା କେଉଟ ପୁଅକୁ ଦୁଇଗୁଣ ପୁରସ୍କାର ଦେବାକୁ ହୁକୁମ ଦେଲେ । କାରଣ ସେଦିନ ରାଜାଙ୍କର ମଧ୍ୟ ନାରୀସ୍ୱଭାବ ସମ୍ପର୍କରେ କିଛି ନୂତନ ଜ୍ଞାନ ଲାଭ ହେଲା ।





# ଗୁଣର ନିକିତି

ରାମଗୁପ୍ତ ପିଲାବେଳେ ଗରିବ ଅବସ୍ଥାରେ ବଢ଼ିଥିଲେ । ତେବେ ସେ ଥିଲେ ଅତ୍ୟନ୍ତ ପରିଶ୍ରମୀ । ପରିଶ୍ରମ ସାଙ୍ଗକୁ ସେ ଯେଉଁ କାମ ହାତକୁ ନେଉଥିଲେ, ତାହା ଏକାଗ୍ର ଭାବରେ କରୁଥିଲେ ।

ଗୃହୁଁ ଗୃହୁଁ ସେ ଅନେକ ଜମିଜମା କରିଗଲେ । ତାଙ୍କ ଅଞ୍ଚଳରେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି ଭାବରେ ତାଙ୍କର ଖ୍ୟାତି ହେଲା ।

କିନ୍ତୁ ଅତି କଷ୍ଟରେ ଟଙ୍କାପଇସା ଉପାର୍ଜନ କରିଥିବା ହେତୁ ପଇସା ଖର୍ଚ୍ଚ କରିବାରେ ସେ ବହୁତ ସାବଧାନ ଥିଲେ । ମଣିଷର ସବୁ ଗୁଣକୁ ସେ ଟଙ୍କାପଇସାରେ ତଉଲୁଥିଲେ ।

ପାଖ ଗାଁର ବିଶିଷ୍ଟ ବ୍ୟକ୍ତି ହରେକୃଷ୍ଣ ମୈଧୁରୀଙ୍କ ଝିଅ ସହ ତାଙ୍କ ପୁଅର ବିବାହ ଠିକ୍ ହେଲା । ଦୁଇଟିଯାକ ପରିବାର ଧନୀ । ତେଣୁ ବେଶ୍ ଜାକଜମକରେ ସବୁ ଆୟୋଜନ ହେଲା ଓ ଯଥାବିଧି ବିବାହ ସମାପ୍ତ ହୋଇଗଲା ।

ବିବାହ ପରଦିନ ସେଥିରେ ଗୀତ ବାଦ୍ୟ ଇତ୍ୟାଦି ପରିବେଷଣ କରିଥିବା ଲୋକଙ୍କୁ ରାମଗୁପ୍ତ ପାରିତୋଷିକ ଦେଉଥାନ୍ତି । ପ୍ରଥମେ ସେ ଢୋଲ ବାଦକକୁ କହିଲେ, "ତମେ କେତେ ଯୋରେ ଯୋରେ ଢୋଲ ପିଟି ହାଲିଆ ହୋଇଛ! ତମ ଦେହରୁ ଝାଳ ନିଗିଡ଼ି ପଡ଼ୁଥିବାର ମୁଁ ଲକ୍ଷ୍ୟ କରିଛି । ନିଅ ଏ ଟଙ୍କା!" ଏହା କହି ସେ ତାକୁ ଶହେ ଟଙ୍କା ଧରାଇ ଦେଲେ । ସେମିତି ଶାହ୍ନାଇ ବାଦକକୁ ଦେଲେ ଦେଢ଼ ଶହ ।

ଏହିପରି ଭାବରେ କିଏ କେତେ ପରିଶ୍ରମ କରିଛି, ସେହି ଅନୁସାରେ ସେ ଟଙ୍କା ବିତରଣ କରି ସାରି ଗୀତ ବୋଲିଥିବା ଗାୟକଙ୍କୁ କହିଲେ, "ହଇହେ ବାବୁ, ତମେ ତ ଅଧ-

ଘଣ୍ଟାଏ ମାତ୍ର ଗୀତ ବୋଲିଲା । ସେତେବେଳେ ପୁଣି ମଧୁର୍ ମଧୁର୍ ହସୁଥିଲା । ପରିଶ୍ରମଟା କ'ଣ କରିଛ? ନାଅ ।" ଏହା କହି ସେ ତାଙ୍କୁ ଦଶଟଙ୍କା ଧରାଇ ଦେଲେ ।

ତାଙ୍କ ପାଖରେ ବସିଥିବା ଖୋସାମୋଦିଆ କେତେଜଣ ହସିଦେଇ କହିଲେ, "ହଁ! ଗୀତ ବୋଲିବାର ପରିଶ୍ରମ କ'ଣ? ସେଥିରେ ତ ମଉଜ!"

ଗାୟକ ପ୍ରଥମେ ତାକୁ ଶହେଟଙ୍କା ମିଳିଲା ଭଳି ଖୁସି ଦେଖାଯାଇଥିଲେ । କିନ୍ତୁ ଦଶଟଙ୍କା ମାତ୍ର ଦେଖି ସେ ଚମକି ପଡ଼ିଲେ । ଅନ୍ୟ ସ୍ଥାନରୁ ସେ ବହୁତ ବେଶି ପାଇଥାନ୍ତେ । ଧନୀ ଘର ବୋଲି ଏଠିକୁ ଆସିଥିଲେ ।

ସମୁଧି ହରେକୃଷ୍ଣ ଚୌଧୁରୀ ସବୁ ଦେଖୁଥିଲେ । ସେ ରାମଗୁପ୍ତଙ୍କୁ ଭିତରକୁ ଡାକି ନେଇ କହିଲେ, "ସମୁଧି! ତମେ ସବାରି ବେହେରାମାନଙ୍କୁ ଶହେ ଶହେ ଲେଖାଏ ବାରଶହ ଟଙ୍କା ଦେବାକୁ ଅଲଗା ରଖିଛଟି?"

"ବାର ଶହ? କାହିଁକି? ସେମାନେ ତ ସମୁଦାୟ ମାତ୍ର ଶହେ ଟଙ୍କା ନେବା କଥା!" ରାମଗୁପ୍ତ କହିଲେ ।

"କେମିତି? ତମେ ସବୁ ଜିନିଷକୁ କେବଳ ଶାରୀରିକ ପରିଶ୍ରମ ଦୃଷ୍ଟିରୁ ତଉଲୁଛ । ସେମାନଙ୍କ ପରିଶ୍ରମ ତ ସବୁଠାରୁ ଅଧିକ!" ଚୌଧୁରୀ କହିଲେ ।

ରାମଗୁପ୍ତ ନୀରବ ରହିଲେ ।

ଚୌଧୁରୀ ହସି ହସି ପୁଣି କହିଲେ, "ବୁଝିଲ ସମୁଧି! ସବୁ ଗୁଣକୁ ସମାନ ନିକିତିରେ ମପାଯାଇ ପାରେନା । କଳାର ମୂଲ୍ୟ ଭିନ୍ନ । ସମସ୍ତେ ଗୀତ ବୋଲି ପାରିବେ ନାହିଁ—ଅନ୍ତତଃ ସେ ଗାୟକଙ୍କ ଭଳି ନୁହେଁ । ତେଣୁ ତାଙ୍କ ବିଦ୍ୟାକୁ ଝାଳ ବୁହା ରୀତିରେ ମାପିଲେ ଚଳିବ ନାହିଁ ।"

ରାମଗୁପ୍ତ ସବୁ ଭଲଭାବେ ବୁଝିଗଲେ । ସେ ଗାୟକଙ୍କୁ ଦୁଇଶହ ଟଙ୍କା ଦେଇ ବିଦାୟ କଲେ ।





# ବିଷ୍ଣୁ ପୁରାଣ

ମହାରାଜ ଦଶରଥ ପୁତ୍ରେଷ୍ଟି ଯଜ୍ଞ କରାଇଲେ ।

ଚରୁଅନ୍ନର ପାତ୍ର ଧରି ଆବିର୍ଭୂତ ହେଲେ ଯଜ୍ଞପୁରୁଷ; ଦଶରଥ ଚରୁଅନ୍ନକୁ ନେଇ କୌଶଲ୍ୟା ଓ କୈକେୟୀଙ୍କ ମଧ୍ୟରେ ଦୁଇଭାଗ କରି ବାଣ୍ଟିଦେଲେ । ତେଣୁ ତୃତୀୟ ରାଣୀ ସୁମିତ୍ରାଙ୍କୁ ଦୁଇରାଣୀ ସେମାନଙ୍କ ଭାଗରୁ ଅଧେ ଅଧେ ଚରୁଅନ୍ନ ଦେଲେ ।

ଚୈତ୍ର ଶୁକ୍ଳ ନବମୀ ଦିନ ଶ୍ରୀବିଷ୍ଣୁ ନବପଲ୍ଲବର କାନ୍ତି ନେଇ ଶ୍ରୀରାମ ରୂପରେ ଜ୍ୟେଷ୍ଠାରାଣୀ କୌଶଲ୍ୟାଙ୍କ ଗର୍ଭରୁ ଜନ୍ମ ହେଲେ । କୈକେୟୀଙ୍କ ଗର୍ଭରୁ ଶଙ୍ଖ ଓ ପଦ୍ମର ଅବତାର ରୂପରେ ଜନ୍ମ ନେଲେ ଭରତ । ଶେଷନାଗଙ୍କ ଅଂଶରେ ସୁମିତ୍ରାଙ୍କ ଗର୍ଭରୁ ଜନ୍ମ ହେଲେ ଲକ୍ଷ୍ମଣ । ତାଙ୍କର ଶରୀରର ବର୍ଣ୍ଣ ଥିଲା ସ୍ୱର୍ଣ୍ଣାଭ । ମାଣିକ୍ୟର କାନ୍ତି ନେଇ ଜନ୍ମ ହେଲେ ଶତ୍ରୁଘ୍ନ, ଲକ୍ଷ୍ମଣଙ୍କର ଯମଜ ଭାଇ । ସେ ଚକ୍ର ଓ ଗଦାର ଅଂଶରୁ ଜାତ ହୋଇଥିଲେ ।

ପ୍ରତିବର୍ଷ ଚୈତ୍ର ଶୁକ୍ଳନବମୀ ବହୁତ ଧୁମ୍ଧାମରେ ପାଳନ କରାଯାଏ । ଥରେ ଚୈତ୍ର ପୂର୍ଣ୍ଣିମା ଦିନ ଚକ୍ରବର୍ତ୍ତୀ ଦଶରଥ ତାଙ୍କ ରାଣୀମାନଙ୍କୁ, ପୁତ୍ରମାନଙ୍କୁ, ମନ୍ତ୍ରୀମାନଙ୍କୁ ଓ ବନ୍ଧୁ ରାଜାମାନଙ୍କୁ ନେଇ ମିଷ୍ଟାନ୍ନ ଭୋଜନ କରୁଥା'ନ୍ତି । ଆନନ୍ଦରେ ସମସ୍ତେ ନାନା ପ୍ରକାର ଗଳ୍ପ କରୁଥା'ନ୍ତି । ରାଣୀ କୌଶଲ୍ୟା ଶିଶୁ ରାମଙ୍କୁ ଜହ୍ନମାମୁଁ ଦେଖାଉଥା'ନ୍ତି । ଶିଶୁ ରାମ ଜହ୍ନକୁ ପାଇବା ପାଇଁ ହାତ ବଢ଼ାଇଲେ ଓ ଜିଦ୍ ଧରି କାନ୍ଦିବାକୁ ଲାଗିଲେ । ଚତୁର



ମନ୍ତ୍ରୀ ସୁମନ୍ତ୍ର ଗୋଟିଏ ଦର୍ପଣ ହାତରେ ଧରି ରାମଙ୍କୁ ଚନ୍ଦ୍ର ଦେଖାଇଲେ । ଦର୍ପଣରେ ଚନ୍ଦ୍ରର ଓ ନିଜର ପ୍ରତିବିମ୍ବ ଦେଖି ସେ "ରାମଚନ୍ଦ୍ର" ବୋଲି କହି ତାଙ୍କର ଛିକି ଛିକି ହାତରେ ତାଳମାରି ନାଚିବାକୁ ଲାଗିଲେ । ସେହିଦିନଠାରୁ ତାଙ୍କୁ ସମସ୍ତେ ରାମଚନ୍ଦ୍ର ବୋଲି ଡାକିଲେ । ତା'ପରେ ମନ୍ତ୍ରୀ ଭଦ୍ର ମଧ୍ୟ ରାମଙ୍କୁ କୋଳକୁ ନେଇ ଦର୍ପଣ ଦେଖାଇଲେ ଓ କହିଲେ "ଏବେ କୁହ ଏଠାରେ କ'ଣ ଅଛି ?" ତତ୍‌କ୍ଷଣାତ୍ ରାମଚନ୍ଦ୍ର କହିଲେ, "ରାମଭଦ୍ର" । ସେଥିପାଇଁ କେହି କେହି ତାଙ୍କୁ 'ରାମଭଦ୍ର' ବୋଲି ଡାକୁଥିଲେ ।

ସେତେବେଳେ ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ ଆସି ରାମଙ୍କ ପାଖରେ ଠିଆ ହୋଇଥା'ନ୍ତି । ଆଉ ଚନ୍ଦ୍ରମାର ପ୍ରତିବିମ୍ବ ଶିଶୁ ରାମଙ୍କର ମଥାର ପଛପାଖରେ ଛତ୍ର ସଦୃଶ ଦେଖାଯାଉଥାଏ । ଲାଗୁଥାଏ ଯେପରି ଶ୍ରୀରାମ ଭାଇମାନଙ୍କୁ ନେଇ ଅଭିଷେକ ହେଉଛନ୍ତି । ପିତା ଦଶରଥ ଓ ଜନନୀଙ୍କର ମନ ଆନନ୍ଦରେ ପୂରି ଉଠୁଥାଏ ।

ରାଜକୁମାରମାନେ ଧୀରେ ଧୀରେ ବଢ଼ିବାକୁ ଲାଗିଲେ । ଲକ୍ଷ୍ମଣ ସର୍ବଦା ଛାୟା ସଦୃଶ ରାମଙ୍କ ନିକଟରେ ରହୁଥା'ନ୍ତି । ଶତ୍ରୁଘ୍ନ ସର୍ବଦା ଭରତଙ୍କ ପାଖରେ ଥା'ନ୍ତି ।

ଚାରିକୁମାର ରାଜଗୁରୁ ବଶିଷ୍ଠଙ୍କଠାରୁ ଶିକ୍ଷା ଲାଭ କରି ସମସ୍ତ ଶାସ୍ତ୍ରରେ ପାରଙ୍ଗମ ହୋଇ ଉଠିଲେ ।

ମହର୍ଷି ସୂତ ଯେତେବେଳେ ନୈମିଷାରଣ୍ୟରେ ମୁନିମାନଙ୍କୁ ଏସବୁ କାହାଣୀ ଶୁଣାଉଥା'ନ୍ତି, ମୁନିମାନେ ରାମଚନ୍ଦ୍ରଙ୍କ ବଂଶର ଉତ୍ପତ୍ତି ଆମୂଳଚୂଳ ଜାଣିବାକୁ ଚାହିଁଲେ । ସୂତମୁନି ତେଣୁ ସେଇଠାରୁ ପୁଣି ଆରମ୍ଭ କଲେ ।

ସୂତ କହିଲେ, "ମହାକଳ୍ପର ପ୍ରାରମ୍ଭରେ ବିବସ୍ୱତ ନାମକ ଦ୍ୟୁତିମାନ ସୂର୍ଯ୍ୟଙ୍କର ଏକ ପୁତ୍ରଙ୍କୁ ବୈବସ୍ୱତ ମନୁ ବୋଲି କୁହାଯାଉଥାଏ । ତାଙ୍କର ଇକ୍ଷ୍ୱାକୁ ଆଦି ଦଶପୁତ୍ର ଜନ୍ମ ହେଲେ । ଇକ୍ଷ୍ୱାକୁ ରାଜଚକ୍ରବର୍ତ୍ତୀ ହେଲେ ଓ ପୃଥିବୀ



ଉପରେ ଦଶହଜାର ବର୍ଷ ଧରି ରାଜ୍ୟ ଶାସନ କଲେ । ତାଙ୍କର ଅନେକ ପୁତ୍ର ଓ ପୌତ୍ର ତାଙ୍କ ପରେ ରାଜ୍ୟ ସବୁ ଭାଗ କରି ଶାସନ କଲେ । ଏହି ଭାବରେ ସୂର୍ଯ୍ୟବଂଶ କ୍ରମେ ବିସ୍ତାର ଲାଭ କଲା ।

ଅନେକ ଦିନ ପରେ ସେହି ପବିତ୍ର ସୂର୍ଯ୍ୟ-ବଂଶରେ ଜନ୍ମ ନେଲେ ଦିଲ୍ଲୀପ । ସେ ଥିଲେ ବୀର, ଯଶସ୍ୱୀ ତଥା ଧାର୍ମିକ । କିନ୍ତୁ ସେ ଥିଲେ ଅପୁତ୍ରିକ । ବଶିଷ୍ଠଙ୍କ ଉପଦେଶ ମାନି ସେ କାମଧେନୁଙ୍କ ଅଂଶଜାତା ନନ୍ଦିନୀଙ୍କର ପରିଚର୍ଯ୍ୟା କରିବାକୁ ଲାଗିଲେ ପୁତ୍ରକାମନାରେ ।

ଦିନେ ମହାରାଜା ଦିଲ୍ଲୀପ ନନ୍ଦିନୀଙ୍କୁ ଚରାଇବା ପାଇଁ ଜଙ୍ଗଲକୁ ନେଇ ଯାଇଥିଲେ । ସେଠାରେ ନନ୍ଦିନୀ ଚରୁ ଚରୁ ଗୋଟିଏ ଗୁମ୍ଫା ପାଖକୁ ଚାଲିଗଲେ । ସେହି ଗୁମ୍ଫାରୁ ଗୋଟିଏ ସିଂହ ବାହାରି ନନ୍ଦିନୀଙ୍କୁ ଆକ୍ରମଣ କଲା । ସିଂହକୁ ବାଧା ଦେବା ପାଇଁ ଦିଲ୍ଲୀପ ତୀର ମାରିବାକୁ ଚାହିଁଲେ, କିନ୍ତୁ ତାଙ୍କର ହାତ ଧନୁ ଦେହରେ ଲାଗି ରହିଲା । ରାଜାଙ୍କର କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ସିଂହ କହିଲା, "ରାଜନ୍, ଏହି ଗାଈ ମୋର ଆହାର ରୂପରେ ଏଠାକୁ ଆସିଛି । ଆପଣ ମୋତେ ମାରିବା ଅଧର୍ମ ହେବ । ତେଣୁ ଆପଣଙ୍କ ହାତ ଅଟକି ଯାଇଛି ।"

ଉତ୍ତରରେ ରାଜା ଦିଲ୍ଲୀପ କହିଲେ, "ତୁମର ଆହାର ଦରକାର । ତୁମେ ମୋତେ ଖାଇ କ୍ଷୁଧା ନିବାରଣ କର । କିନ୍ତୁ ନନ୍ଦିନୀଙ୍କୁ ଛାଡ଼ିଦିଅ ।"

ଏହି ଉତ୍ତର ଶୁଣି ସିଂହ ଅଦୃଶ୍ୟ ହୋଇଗଲା । ନନ୍ଦିନୀ ଦିଲ୍ଲୀପଙ୍କ ଭକ୍ତିରେ ସନ୍ତୁଷ୍ଟ ହୋଇ କହିଲେ, "ବତ୍ସ, ମୁଁ ମାୟାଦ୍ୱାରାହିଁ ଏହି ଦୃଶ୍ୟର ସୃଷ୍ଟି କରିଥିଲି ତୁମକୁ ପରୀକ୍ଷା କରିବା ପାଇଁ । ତୁମେ ପରୀକ୍ଷାରେ ସଫଳ ହୋଇଛ । ଏବେ ତୁମର ସନ୍ତାନପ୍ରାପ୍ତି ପାଇଁ ମୁଁ ବର ଦେଉଛି ।"

ମହାରାଜା ଦିଲ୍ଲୀପଙ୍କର ପୁତ୍ର ହେଲେ ରଘୁ ଯାହାଙ୍କ ନାମରେ ବଂଶର ନାମ ହେଉଛି ରଘୁବଂଶ । ସେ ଥିଲେ ଅତ୍ୟନ୍ତ ଧର୍ମପରାୟଣ । ଥରେ ଜଣେ ମୁନି ତାଙ୍କର ଅତିଥି ହୋଇଥିଲେ



ଓ ତାଙ୍କୁ ପରୀକ୍ଷା କରିବା ପାଇଁ କହିଲେ କି ସେ କେବଳ ରାଣୀଙ୍କୁହିଁ ଗୃହାନ୍ତି । ରାଜା ତତ୍କ୍ଷଣାତ୍ ରାଣୀଙ୍କୁ ଦାନ କରିଦେଲେ । କିଛି ସମୟ ଆଶ୍ରମରେ ରଖି ମୁନି ପୁଣି ରାଣୀଙ୍କୁ ଫେରାଇଲେ । ରାଜା କହିଲେ ଦାନ ଜିନିଷ ପୁନଶ୍ଚ ସେ ଗ୍ରହଣ କରିବେ ନାହିଁ । ତେଣୁ ରାଣୀ କହିଲେ, "ତାହାହେଲେ ସବୁଠାରୁ ଭଲ ହେବ ମୋର ମୁଣ୍ଡ କାଟିଦିଅ ।" ଏ କଥାରେ ରଘୁ ଖଣ୍ଡାଟିଏ ବାହାର କରି ରାଣୀଙ୍କ ମଥା ସ୍ପର୍ଶ କରିବା ମାତ୍ରେ ତାହା ଏକ ଫୁଲହାରରେ ପରିଣତ ହୋଇଗଲା । ତାଙ୍କର ଧର୍ମ ଓ କର୍ତ୍ତବ୍ୟପରାୟଣତାରେ ଦେବତାମାନେ ସନ୍ତୁଷ୍ଟ ହୋଇ ତାଙ୍କୁ ଆଶୀର୍ବାଦ ଦେଲେ ।

ସେ ଥିଲେ ବଡ଼ ଦାନୀ । ଦାନ କରି କରି ସବୁ ଧନ ଶେଷ ହୋଇଯିବା ପରେ ସେ କିଛି ଧନ କରଜ ସୂତ୍ରରେ ଆଣିବା ପାଇଁ କୁବେରଙ୍କ ପାଖକୁ ଗଲେ । ସେଠାରେ ଯକ୍ଷମାନେ ତାଙ୍କୁ ବାଧା ଦେଲେ ଓ ତାଙ୍କ ସହିତ ଯୁଦ୍ଧ କଲେ । ଯୁଦ୍ଧରେ ସେମାନେ ହାରିଲେ ଓ ରାଜା ରଘୁ ଅଳକାପୁରୀରେ ପ୍ରବେଶ କରି କୁବେରଙ୍କ ସହିତ ସାକ୍ଷାତ୍ କଲେ । କୁବେର ତାଙ୍କୁ ଖୁବ୍ ସମ୍ମାନ ଦେଖାଇଲେ ଓ ତାଙ୍କର ଇପ୍ସିତ ଧନ ଦେଇ ସାଦରେ ବିଦାୟ ଦେଲେ । ସେ ସବୁ ମଧ୍ୟ ସେ ଦାନ କରିଦେଲେ ।

ମହାରାଜା ରଘୁଙ୍କର ପୁଅ ଥିଲେ ଅଜ । ସେ ଥିଲେ ଜଣେ ବିକ୍ରମୀ ରାଜା । ଥରେ ଭୋଜରାଜଙ୍କ କନ୍ୟା ଇନ୍ଦୁମତୀଙ୍କର ସ୍ୱୟମ୍ବର ହେଲା । ଅଜଙ୍କୁହିଁ ଇନ୍ଦୁମତୀ ବରଣ କଲେ । ଅନ୍ୟ ରାଜାମାନେ ରାଗି କରି ଦୁହିଁଙ୍କ ଉପରେ ଆକ୍ରମଣ କଲେ । ସେ ଯୁଦ୍ଧରେ ଏକାକୀ ଅଜ ଅନ୍ୟ ସମସ୍ତ ରାଜାଙ୍କୁ ହଟାଇ ଦେଇଥିଲେ । ବହୁତ ଦିନ ସଂସାର କରି ଅନେକ ପୁତ୍ର କନ୍ୟାଙ୍କୁ ଇନ୍ଦୁମତୀ ଜନ୍ମ ଦେଇଥିଲେ । ଦିନେ ଅଜ ଇନ୍ଦୁମତୀଙ୍କ ସହିତ ଉଦ୍ୟାନରେ ବୁଲୁଥା'ନ୍ତି । ଆକାଶ ମାର୍ଗରେ ସେତେବେଳେ ଯାଉଥା'ନ୍ତି ନାରଦ ତାଙ୍କ ବୀଣାରୁ ସ୍ୱର୍ଗୀୟ ଫୁଲର ହାରଟିଏ ଖସିପଡ଼ି ଇନ୍ଦୁମତୀଙ୍କ କୋଳରେ ପଡ଼ିଲା । ତତ୍କ୍ଷଣାତ୍ ଇନ୍ଦୁମତୀଙ୍କର ମୃତ୍ୟୁ ହେଲା ।





ପ୍ରିୟତମା ପତ୍ନୀଙ୍କ ମୃତ୍ୟୁରେ ସେ ଶୋକାତୁର ହେବା ଦେଖି ନାରଦ ଆସି ତାଙ୍କୁ ଇନ୍ଦୁମତୀଙ୍କ ପୂର୍ବଜନ୍ମ ବୃତ୍ତାନ୍ତ କହିଲେ ।

ଥରେ ତୃଣବିନ୍ଦୁ ଋଷିଙ୍କର ତପସ୍ୟା ଭଙ୍ଗ କରିବା ଉଦ୍ଦେଶ୍ୟରେ ଇନ୍ଦ୍ର ହରିଣୀ ନାମକ ଅପ୍‌ସରାକୁ ପଠାଇଥିଲେ । ଋଷି ତାଙ୍କୁ ଦେଖି କ୍ରୋଧବଶତଃ ମାନବ ଜନ୍ମ ପାଇବାର ଅଭିଶାପ ଦେଲେ । ହରିଣୀଙ୍କର ଅନୁରୋଧରେ ଋଷି କହିଥିଲେ କି ସ୍ୱର୍ଗଫୁଲର ମାଳ ସ୍ପର୍ଶ କରିବା ମାତ୍ରେ ସେ ମାନବ ଜନ୍ମରୁ ମୁକ୍ତ ହେବେ । ସେଇ ଅପ୍‌ସରା ହେଲେ ଇନ୍ଦୁମତୀ ଏବଂ ଏଇ ତାଙ୍କର ମୃତ୍ୟୁ ରହସ୍ୟ ।"



ରାଜା ଅଜଙ୍କର ପୁତ୍ର ହେଲେ ଦଶରଥ । ସେ ଦେବାସୁରଙ୍କ ଯୁଦ୍ଧରେ ଦେବତାଙ୍କୁ ସହାୟତା କରିବାକୁ ଯାଉଥା'ନ୍ତି । ଥରେ ସେ ଏକ ଯୁଦ୍ଧରେ ଇନ୍ଦ୍ରଙ୍କୁ ସହାୟତା କରିବାକୁ ଯାଇଥିଲେ । ତାଙ୍କ ସାଥିରେ ରାଣୀ କୈକେୟୀ ମଧ୍ୟ ଯାଇଥିଲେ । ଯୁଦ୍ଧ କରିବା ସମୟରେ ଥରେ ରଥ ଚକରୁ କଲଣୀ ଖସିପଡ଼ିବାରୁ କୈକେୟୀ ସେଥିରେ ନିଜର ଆଙ୍ଗୁଠି ରଖି ଚକକୁ ଅଟକାଇ ରଖିଥିଲେ । ରାଣୀଙ୍କର ଏପରି ସାହାସିକ କାର୍ଯ୍ୟରେ ଦଶରଥ ଅତ୍ୟନ୍ତ ଖୁସି ହୋଇ ତାଙ୍କୁ ଦୁଇଟି ବର ଯାଚିଲେ । କୈକେୟୀ କହିଲେ ସମୟ ଦେଖି ସେ ସେହି ବରକୁ ନିଜେ ମାଗିନେବେ ।

ରାଜା ଦଶରଥ ଶବ୍ଦଭେଦୀ ବାଣ ମାରିବାରେ ଦକ୍ଷ ଥିଲେ । ଥରେ ବନ୍ୟହସ୍ତୀମାନେ ଗ୍ରାମରେ ପଶି ଫସଲ ନଷ୍ଟ କରୁଥିବାରୁ ରଜା ହସ୍ତୀମାନଙ୍କୁ ଭୟଭୀତ କରିବା ପାଇଁ ବଣକୁ ଯାଇଥିଲେ । ଦୂରରୁ ଗୋଟିଏ ହସ୍ତୀ ପାଣି ପିଇବାର ଶବ୍ଦ ଶୁଣି ସେ ଶବ୍ଦଭେଦୀ ବାଣ ନିକ୍ଷେପ କଲେ । କିନ୍ତୁ ହାୟ, ଯେଉଁ ପ୍ରାଣୀଟି ତାଙ୍କ ବାଣର ଶିକାର ହେଲା ସେ ହାତୀ ନଥିଲା, ଥିଲା ଏକ ଋଷିକୁମାର । ଅନ୍ଧ ବାପମା'ଙ୍କର ଏକମାତ୍ର ପୁତ୍ର ଶ୍ରବଣକୁମାର ତୃଷାତୁର ପିତାମାତାଙ୍କ ପାଇଁ ପାଣି ନେବାକୁ ଆସିଥିଲା । ଦଶରଥ ପାଣି ଓ ଶ୍ରବଣକୁମାରର ମୃତ ଦେହ ନେଇ ଋଷି ଓ ଋଷିପତ୍ନୀଙ୍କ



ନିକଟରେ ପହଞ୍ଚିଲେ । ସେମାନେ ପାଣି ପିଇ ତୃଷା ମେଣ୍ଟାଇବା ପରେ ରାଜା ସବୁ ଘଟଣା କହି କ୍ଷମା ଗୃହିଲେ । ବୃଦ୍ଧ ବୟସରେ ଅନ୍ଧ ପିତାମାତା ତାଙ୍କର ଏକମାତ୍ର ପୁତ୍ରକୁ ହରାଇ ଶୋକରେ ଆକୁଳ ହୋଇ କ୍ରନ୍ଦନ କରୁ କରୁ ରାଜାଙ୍କୁ ଅଭିଶାପ ଦେଲେ କି ସେ ମଧ୍ୟ ତାଙ୍କରିପରି ବୃଦ୍ଧ ବୟସରେ ପୁତ୍ର ଶୋକରେ ମୃତ୍ୟୁ ବରଣ କରିବେ । ତା'ପରେ ପୁତ୍ରର ଚିତାରେ ଦୁହେଁ ପ୍ରାଣ ବିସର୍ଜନ ଦେଲେ ।

ସୂର୍ଯ୍ୟବଂଶୀ ରାଜାମାନେ ଶରଣାଗତକୁ ରକ୍ଷା କରିବାରେ ଖୁବ୍ ବିଖ୍ୟାତ ଥିଲେ । ସେମାନଙ୍କ ମଧ୍ୟରେ ଶିବି ଥିଲେ ଅଗ୍ରଗଣ୍ୟ । ଶିବିଙ୍କୁ ପରୀକ୍ଷା କରିବା ପାଇଁ ଥରେ ଅଗ୍ନି ଓ ଇନ୍ଦ୍ର ଯଥାକ୍ରମେ ଛଞ୍ଚାଣ ଓ କପୋତ ରୂପରେ ଆସି ପହଞ୍ଚିଲେ । ଛଞ୍ଚାଣ ଗୋଡ଼ାଉ ଥିବାରୁ କପୋତଟି ପ୍ରାଣ ବିକଳରେ ଉଡ଼ି ଆସି ରାଜାଙ୍କ କୋଳରେ ବସି ପଡ଼ିଲା । ତତ୍କ୍ଷଣାତ୍ ଛଞ୍ଚାଣ ଆସି ରାଜାଙ୍କୁ କହିଲା, "ରାଜା, ମୋର ଖାଦ୍ୟ ହେଉଛି ଏଇ କପୋତ ! ତାକୁ ଛାଡ଼ି ଦିଅନ୍ତୁ ମୁଁ ଖାଇ କ୍ଷୁଧା ନିବାରଣ କରେ ।"

ରାଜା ଶିବି କହିଲେ, "ତୁମର କ୍ଷୁଧା ନିବାରଣ ମୁଁ ମୋ ଦେହର ମାଂସରେ କରିବି କିନ୍ତୁ ମୋର ଆଶ୍ରୟ ନେଇଥିବା ଏଇ କପୋତଟିକୁ ମୁଁ କଦାପି ଛାଡ଼ି ପାରିବି ନାହିଁ ।" ଏପରି କହି ରାଜା ତରାଜୁ ଆଣି ନିଜ ଜଂଘରୁ ଖଣ୍ଡ ଖଣ୍ଡ ମାଂସ କାଟି କପୋତ ସହିତ ଓଜନ କଲେ । କିନ୍ତୁ ଯେତେ ମାଂସ ଦେଲେ ମଧ୍ୟ କପୋତର ଓଜନ ବେଶି ହେଲା । ଶିବି ଶେଷକୁ ନିଜେ ଯାଇ ତରାଜୁରେ ବସିଲେ ଓ କହିଲେ, "ହେ ଛଞ୍ଚାଣ ତୁମେ ମୋତେ ଖାଇ ତୁମର କ୍ଷୁଧା ନିବାରଣ କର ।" ଏଇ ସମୟରେ ଆକାଶରୁ ପୁଷ୍ପବୃଷ୍ଟି ହେଲା । କପୋତ ଓ ଛଞ୍ଚାଣ ନିଜର ସ୍ୱରୂପ ପ୍ରକାଶ କରି ରାଜାଙ୍କୁ ଆଶିର୍ବାଦ କଲେ ।

କ୍ଷତ୍ରିୟ ହୋଇ ମଧ୍ୟ ଘୋର ତପସ୍ୟା ଦ୍ୱାରା ବ୍ରହ୍ମର୍ଷି ପଦ ପାଇଥିଲେ ଏହି ବଂଶର ପ୍ରତାପୀ ରାଜା ବିଶ୍ୱାମିତ୍ର । ଏଇ ବଂଶରେ ଜନ୍ମ ନେଇଥିଲେ ମହାନ୍ ରାଜର୍ଷି ଅମ୍ବରୀଷ ଯିଏ ନିଜର ଭକ୍ତି ବଳରେ ବିଷ୍ଣୁଙ୍କର ଏତେ

ପ୍ରିୟପାତ୍ର ହୋଇଥିଲେ ସେ ଥରେ ଋଷି ଦୁର୍ବାସା ତାଙ୍କ ସହିତ ଦୁର୍ବ୍ୟବହାର କରିବାରୁ ବିଷ୍ଣୁଙ୍କ ଚକ୍ର ଦୁର୍ବାସାଙ୍କୁ ଆକ୍ରମଣ କରିଥିଲା ଓ ଶେଷରେ ସେ ରାଜାଙ୍କର ଶରଣ ଯାଇଥିଲେ ।

ସେଇ ବଂଶରେ ଅନ୍ୟ ଏକ ରାଜାଙ୍କର କନ୍ୟା ରୂପେ ଜନ୍ମ ନେଇଥିଲେ ସ୍ୱୟଂ ଲକ୍ଷ୍ମୀ । ଦେବର୍ଷି ନାରଦ ଥରେ ଖୁବ୍ ଗର୍ବ କରି କହିଲେ, "ମୁଁ ବିଷ୍ଣୁଙ୍କର ଏତେ ନିଜର ଯେ ମାୟା ମୋହ ମୋର କିଛି କରିପାରିବ ନାହିଁ ।" ଭଗବାନ୍ ସବୁ ସହିଥା'ନ୍ତି, କିନ୍ତୁ ଗର୍ବ ସହିପାରନ୍ତି ନାହିଁ । ଥରେ ନାରଦ ଓ ପର୍ବତ ଋଷି ଦୁଇ ବନ୍ଧୁ ବୁଲି ବୁଲି ସେଇ ରାଜ୍ୟରେ ପହଞ୍ଚିଲେ ଓ ରାଜକୁମାରୀଙ୍କ ସୌନ୍ଦର୍ଯ୍ୟ ଦେଖି ଦୁହେଁ ମୋହିତ ହେଲେ । ଦୁହେଁ ଭିନ୍ନ ଭିନ୍ନ ସମୟରେ ରାଜାଙ୍କ ନିକଟରେ ନିଜ ନିଜର ଇଚ୍ଛା ପ୍ରକାଶ କଲେ କି ସେ ରାଜକୁମାରୀଙ୍କୁ ବିବାହ କରିବାକୁ ଚାହାନ୍ତି । ରାଜା କହିଲେ, "ମୁଁ ସ୍ୱୟମ୍ବର କରିବି, କନ୍ୟାର ଯାହାକୁ ଇଚ୍ଛା ତାଙ୍କୁ ବରଣ କରିବ ।" ଇତିମଧ୍ୟରେ ପର୍ବତ ଋଷି ଯାଇ ବିଷ୍ଣୁଙ୍କୁ କହିଛନ୍ତି କି ସ୍ୱୟମ୍ବର ବେଳେ ନାରଦଙ୍କ ମୁହଁ ମାଙ୍କଡ଼ ମୁହଁ ହୋଇଯାଉ । ପୁଣି ନାରଦ ମଧ୍ୟ ଗୋପନରେ ବିଷ୍ଣୁଙ୍କୁ କହିଛନ୍ତି କି ପର୍ବତ ଋଷିଙ୍କ ମୁହଁ ସ୍ୱୟମ୍ବର ବେଳେ ଭାଲୁମୁହଁ ହୋଇଯାଉ । ସ୍ୱୟମ୍ବର ସମୟରେ ସବୁ ରାଜା ନାରଦ ଓ ପର୍ବତ ଋଷି ସମସ୍ତେ ଅପେକ୍ଷା କରିଛନ୍ତି କନ୍ୟା କାହାକୁ ବରଣମାଳ ଦେବ । କନ୍ୟା କାହାକୁ ମଧ୍ୟ ବରଣ କରୁନାହିଁ । ଶେଷରେ ବିଷ୍ଣୁ ନିଜେ ଆସିଲେ ଓ କନ୍ୟା ତାଙ୍କୁହିଁ ବରଣ କଲା । ସେତେବେଳେ ଯାଇ ଦୁଇ ଋଷି ନିଜ ନିଜର ଭୁଲ୍ ଉପଲବ୍ଧି କରି ଲଜ୍ଜିତ ହେଲେ । ପୁଣି ନିଜ ନିଜର ରୂପ ଦର୍ପଣରେ ଦେଖି ତାଙ୍କର ଲଜ୍ଜା ଆହୁରି ଦ୍ୱିଗୁଣିତ ହେଲା । ସେ ଘଟଣା ପରେ ନାରଦ ଆଉ କେବେ ଗର୍ବ କରି ନାହାନ୍ତି କି ମାୟାମୋହ ତାଙ୍କୁ ସ୍ପର୍ଶ କରେନାହିଁ ବୋଲି ।





# ପତ୍ନୀର ଧର୍ମ

ଅହଲ୍ୟା ରନ୍ଧାବଢ଼ା ସାରି ଦେଖିଲା ତା' ଦୁଆରେ କିଏ କବାଟ ଠକ୍ ଠକ୍ କରୁଛି । ଭାବିଲା ତା' ସ୍ୱାମୀ କମଳ ସହରକୁ ଯାଇଥିଲା ବୋଧେ ଫେରୁଛି । କବାଟ ଖୋଲି ଦେଖିଲା ତାଙ୍କ ପଡ଼ୋଶୀ ଘରର ସ୍ତ୍ରୀ ଜାନକୀ । ଅହଲ୍ୟାକୁ ଦେଖି ଜାନକୀ କହିଲା, "ରୋଷେଇ ଶେଷ କରି ଭାବିଲି ଟିକିଏ ବୁଲି ଆସେ ।"

ଅହଲ୍ୟା ଏକାଟିଆ ଥିଲା । ଜାନକୀକୁ ଦେଖି ଖୁସି ହୋଇ କହିଲା, "ଭଲ କଲ ଆସିଲ । ମୁଁ ମଧ୍ୟ ଏକେଲା ରହିଛି । ସିଏ ତ ସହରକୁ ଯାଇଛନ୍ତି । ଦିନକ ପାଇଁ ଯାଇ ଦୁଇଦିନ ହୋଇଗଲା ।"

ଦୁହେଁ ବସି ବସି ବହୁତ ଗପ କଲେ । କ୍ରମେ ସନ୍ଧ୍ୟା ହେବାକୁ ବସିଲା । ଜାନକୀ କହିଲା, "ମୁଁ ଯାଏଁ ତେଣେ କାମ ପଡ଼ିଥିବ ।" ଯିବା ପୂର୍ବରୁ ସେ ନିଜ ବେକରୁ ଗୋଟିଏ ବଡ଼ ସୁନାହାର କାଢ଼ି ଅହଲ୍ୟାକୁ ଦେଖାଇ କହିଲା, "ଦେଖ ତ, ଏ ହାର ଏବେ ମୋ ସ୍ୱାମୀ ସହରରୁ ଆଣି ଦେଇଛନ୍ତି । ତୁମକୁ କିପରି ଲାଗୁଛି ?"

ଅହଲ୍ୟା ସେହି ସୁନ୍ଦର ପଥରଜଡ଼ିତ ହାରଟିକୁ ହାତରେ ଧରି ବାରମ୍ବାର ଦେଖିଲା ଓ କହିଲା, "ଅତି ଚମତ୍କାର ହୋଇଛି । ମୋ ସ୍ୱାମୀ କହିଛନ୍ତି ଏଥର ମୋ ପାଇଁ ସୁନାଚୁଡ଼ି ଆଣିଦେବେ । କିନ୍ତୁ ମୁଁ ତାଙ୍କୁ କହିବି ଚୁଡ଼ି ନ ଆଣି ଏଇପରି ହାରଟିଏ ଆଣିଦେବା ପାଇଁ । ଆଚ୍ଛା ଦୁଇଦିନ ପାଇଁ ହାରଟି ମୋ ପାଖରେ ଥାଉ, ମୁଁ ତାଙ୍କୁ ଦେଖାଇ ପୁଣି ତୁମକୁ ଫେରାଇ ଦେବି ।"

"ଠିକ୍ ଅଛି ।" କହି ଜାନକୀ ହାରଟି ଅହଲ୍ୟାକୁ ଦେଇ ଘରକୁ ଫେରିଗଲା । ଅହଲ୍ୟା ହାରଟି ଆହୁରି ଥରେ ଖୁସି ହୋଇ

କାଶୀନାଥ



ପଚାରି ଜାଣିଲା ତା' ହାରଟି ଚୋରି ଯାଇଛି; ସେ ତେଣୁ କାନ୍ଦିବାକୁ ଲାଗିଲା ।

ଅହଲ୍ୟା କିନ୍ତୁ ମନରେ ସାହସ ବାନ୍ଧି ତାକୁ ବୁଝାଇଲା, "ତମେ ବ୍ୟସ୍ତ ହୁଅ ନାହିଁ । ମୋର ସ୍ୱାମୀ ଆସିଗଲେ ତୁମ ହାର ପାଇଁ କିଛି ନା କିଛି ବ୍ୟବସ୍ଥା କରିଦିବ ।"

"ଚାରିଦିନ ପରେ ତ ମୋ ନଣନ୍ଦ ବାହାଘର । ତା' ପୂର୍ବରୁ ଯେପରି ହେଲେ ହାର ଆଣିଦେବାକୁ ହେବ ନହେଲେ ମୋ ସ୍ୱାମୀଙ୍କ ଆଗରେ ମୁଁ ମୁହଁ ଦେଖାଇ ପାରିବି ନାହିଁ । ସେ କହୁଥିଲେ ହାରର ମୂଲ୍ୟ ଦୁଇହଜାର ଟଙ୍କା ।" ଜାନକୀ କହିଲା ।

ଠିକ୍ ଏତିକି ବେଳେ କମଳ ଆସି ପହଞ୍ଚିଲା ଓ ଲୋକ ଭିଡ଼ କନ୍ଦାକଟା ଆଦି ଦେଖି ପଚାରିଲା, "କଥା କ'ଣ?" ଅହଲ୍ୟା ଅଧାକାନ୍ଦ ଅବସ୍ଥାରେ ଚୋରି ବୃତ୍ତାନ୍ତ ସବୁ କହିଲା; ହେଲେ ହାର କଥା କହିଲା ନାହିଁ ।

ଦେଖିଲା ଓ ତା'ପରେ ନେଇ ସିନ୍ଦୁକରେ ଭରି ରଖିଦେଲା ।

ଅନେକ ରାତି ପର୍ଯ୍ୟନ୍ତ ସେ କମଳକୁ ଅପେକ୍ଷା କଲା । ଶେଷରେ ସେ ନ ଆସିବାରୁ ଦୁଇପାଖ କବାଟ ବନ୍ଦ କରି ଶୋଇଗଲା ।

ସକାଳୁ ଉଠି ସେ ଦେଖିଲା ବାରିପଟ କବାଟ ମେଲା । ସେ ଭୟରେ ଚମକି ପଡ଼ିଲା । ଦେଖିଲା ସିନ୍ଦୁକ ଖୋଲା ହୋଇ ପଡ଼ିଛି । ସେଥିରୁ ଜାନକୀର ହାର, ତା'ର ନିଜର କାନଫୁଲ ଓ ଶହେଟଙ୍କା ଚୋରି ହୋଇ ଯାଇଛି ।

ଚୋରି ଖବର ଶୁଣି ସାଇପଡ଼ିଶାର ଲୋକ ଜମା ହୋଇଗଲେ । ଜାନକୀ ଅହଲ୍ୟାକୁ

ପଡ଼ୋଶୀ ଲୋକମାନେ ଚାଲିଯିବା ପରେ କମଳ ସ୍ତ୍ରୀ ଉପରେ ରାଗି କହିଲା, "ତମେ କେମିତି ଶୋଇଥିଲ ଯେ ଟିକିଏ ବି ଜାଣି ପାରିଲ ନାହିଁ ଚୋରର କଥା । ତମେ କ'ଣ କବାଟ ଠିକ୍ ଭାବରେ ବନ୍ଦ କରି ରଖି ନଥିଲ କି?"

ଏକଥା ଶୁଣି ଅହଲ୍ୟା ମଧ୍ୟ ଚିତ୍କାର କରି କହିଲା, "ପ୍ରଥମ କଥା ତମେ ତ ରାତିରେ ଘରଠୁ ଦୂରରେ ରହୁଛ । ଆଉ ଚୋରି ହେଲା





ମୋ ଭୁଲ୍ ରୁ ? ତେଇଁଥିଲେ ଗୃହର ମୁଁ କ'ଣ ବା କରିପାରିଥା'ନ୍ତି, ତମେ ରାତିରେ ଘରେ ନ ରହି, ବାହାରେ ରହିବା ଯୋଗୁ ଏପରି ହେଲା ।"

ଅହଲ୍ୟା ରାଗିବାରୁ କମଳ ଶାନ୍ତ ହୋଇଗଲା ଓ ସ୍ତ୍ରୀକୁ ଶାନ୍ତ କରିବାକୁ କହିଲା, "ଏବେ ଯାହା ହେବାର ହେଲାଣି, ତୁମର ଅଳଙ୍କାର ମୁଁ ସହରରୁ ଆଣିଦେବି ।"



କମଳ ଶାନ୍ତ ହୋଇଯିବାରୁ ଅହଲ୍ୟା ଜାନକୀର ହାର କଥା କହିଲା । ସେ କହିଲା, "ଠିକ୍ ସେଇଭଳି ହାର ଦୁଇ ତିନିଦିନ ମଧ୍ୟରେ ନ ଆଣିଲେ ଗ୍ରାମରେ ଆଉ ମୁହଁ ଦେଖାଇ ହେବ ନାହିଁ ।"

କମଳ କିନ୍ତୁ କହିଲା, "ମୋର ବିଶ୍ୱାସ ହେଉନି ଯେ ଜାନକୀର ସ୍ୱାମୀ ଯେପରି କଂଜୁସ୍, ସେ ତାକୁ ଦୁଇହଜାର ଟଙ୍କାର ହାର ଦେଇଥିବ ଓ ସେ ତମକୁ ଅନାୟାସରେ ଦେଇଦେଲା । ସେଇଟା ନିଶ୍ଚୟ ନକଲି ସୁନା ହୋଇଥିବ । ସେ ହାର ଦଶଟଙ୍କାରେ ମିଳିବ । ମୁଁ କାଲି ଗୋଟାଏ ନେଇ ଆସିବି ।"

ଅହଲ୍ୟା ଭାବିଲା ଯାହାହେଉ ଜାନକୀ ନଣନ୍ଦର ବାହାଘରଟା ଚଳେଇ ଦେଇ ଆସିଲେ ଗଲା । ଖାଣ୍ଟି ସୁନା ହୋଇଥିଲେ ପରେ ହାରଟିଏ ବନାଇ ଦେଲେ ହେବ ।

ପରଦିନହିଁ କମଳ ସହରରୁ ଅହଲ୍ୟାର ବର୍ଣ୍ଣନା ମୁତାବକ ହାରଟିଏ ନେଇ ଆସିଲା । ହାରଟି ଦେଖି ଅହଲ୍ୟା ଖୁସି ହେଲା ଓ ଜାନକୀ ଘରକୁ ତୁରନ୍ତ ଯାଇ ହାରଟି ଦେଲା ।

ଜାନକୀ ହାରଟିକୁ ନେଇ କହିଲା, "ଇଏ ମୋ'ର ହାର, କେଉଁଠୁ ମିଳିଲା ?" ଅହଲ୍ୟା ହସି ହସି କହିଲା, "ଏଇଟି କିନ୍ତୁ ନକଲି ସୁନାର ହାର । କୌଣସି ମତେ ନଣନ୍ଦ ବାହାଘର ଏଇଥିରେ ଚଳାଇ ନିଅ । ପରେ ଭଲ ସୁନାର ହାର କରିଦେବା ।"

ଜାନକୀ ହାରକୁ ବେକରେ ଲଗାଇ କହିଲା, "ଏଇଟିହିଁ ମୋର ହାର; ତୁମ ସ୍ୱାମୀର ଅସଲ ରୂପ ଦେଖାଇବା ପାଇଁ ମୁଁ ତୁମ ସହିତ ଟିକିଏ କଠୋର ବ୍ୟବହାର କରିଛି କିନ୍ତୁ ସେଥିରେ ତୁମରହିଁ ଲାଭ ହେବ ।"







ଜାନକୀ କହିଲା, "କିନ୍ତୁ ମୁଁ ସବୁ ଜାଣେ । ସେ ସବୁଦିନେ ସହରକୁ ଜୁଆ ଖେଳିବାକୁ ଯା'ନ୍ତି । ସେଦିନ ରାତି ଅଧରେ ମୋ ନିଦ ଭାଙ୍ଗି ଯାଇଥିଲା ଓ ମୁଁ ଦେଖିଲି ଅନ୍ଧାରରେ ତୁମ ସ୍ୱାମୀ ତୁମ ଘର ପଛପଟରେ ବୁଲୁଛନ୍ତି । ତା'ପରେ ସବୁ ଘଟଣା ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି ଯେ ମଣିଷ ନିଜ ଘରୁ କିପରି ଅଳଙ୍କାର ଚୋରାନ୍ତି । କିନ୍ତୁ ତୁମେ ଫେରାଇଥିବା ମୋ ନିଜ ହାରଟି ଦେଖି ସେ ବିଷୟରେ ମୁଁ ନିଶ୍ଚିତ ହୋଇଗଲି । କାରଣ ପଥରବସା ହାର ଏକବାରେ ଏକାପରି କେବେ ନ ହୋଇପାରେ ।"

ଅହଲ୍ୟା କିଛି ଏସବୁ ବୁଝି ନ ପାରି କହିଲା, "ମୋ ସ୍ୱାମୀଙ୍କର ଅସଲି ରୂପ କ'ଣ ?"

ଜାନକୀ କହିଲା, "କଥା କ'ଣ କି, ତୁମ ଘରେ ତୁମ ସ୍ୱାମୀହିଁ କାଲି ଚୋରି କରିଛନ୍ତି । ବାହାରୁ କେହି ଚୋର ଆସିନି ।"

"ତମେ ମୋ ସ୍ୱାମୀଙ୍କ ନାମରେ ବଦନାମ କରୁଛ ? ସେ ନିଜ ଘରେ ବା କାହିଁକି ଚୋରି କରିବେ ।" ଅହଲ୍ୟା କହିଲା ।

ଜାନକୀ ଶାନ୍ତ ଭାବରେ ପଚାରିଲା, "ଆଚ୍ଛା ତମେ ଜାଣ ସେ କାହିଁକି ସହରକୁ ଯା'ନ୍ତି ?"

ଅହଲ୍ୟା କହିଲା, "ନା" ତ, ମୁଁ କାହିଁ ଜାଣିବି । ସେ ତ କହନ୍ତି ସହରରେ କାମ ଥାଏ ବୋଲି ।"

ଜାନକୀ କଥା ଶୁଣି ଅହଲ୍ୟା ମଥା ପିଟି କହିଲା, "ମୋତେ ଏବେ ବି ବିଶ୍ୱାସ ହେଉନାହିଁ ଯେ ମୋ ସ୍ୱାମୀ ଏପରି କରନ୍ତି ବୋଲି ।"

ଜାନକୀ କହିଲା, "ମୋ ସ୍ୱାମୀ ଥରେ ସହରରେ ନିଜେ ଦେଖିଛନ୍ତି ତୁମ ସ୍ୱାମୀ ଜୁଆ ଖେଳୁଥିବାର । ଦେଖୁନ ତାଙ୍କର କରଜ କାହିଁକି ବଢ଼ି ଚାଲିଛି ?"

ଅହଲ୍ୟା କହିଲା, "ଭଉଣୀ, ତମେ ମୋର ଆଖି ଖୋଲି ଦେଇଛ । ସେଥିପାଇଁ ମୁଁ କୃତଜ୍ଞ ।"

ତା'ପରେ ଅହଲ୍ୟା ନିଜ ଘରକୁ ଚାଲିଗଲା ।

ଅହଲ୍ୟାକୁ ଦେଖି କମଳ କହିଲା, "ଜାନକୀ ହାର ବିଷୟରେ କ'ଣ କହିଲା ?" କିନ୍ତୁ ଅହଲ୍ୟା କୌଣସି ଉତ୍ତର ଦେଲାନାହିଁ । ସେ

ନିଜ କୋଠରି ଭିତରକୁ ଚାଲିଯାଇ ବିଛଣା ଉପରେ ଶୋଇ ଶୋଇ ଖାଲି କାନ୍ଦିଲା । କମଳ କିଛି ବୁଝି ନ ପାରି ଅହଲ୍ୟାକୁ ଯାଇ ସାନ୍ତ୍ୱନା ଦେବାରୁ ସେ ରାଗି ଉଠି କପାଳରେ ହାତ ବାଡ଼େଇ କହିଲା, "ହାୟ, ମୋର ଦୁର୍ଭାଗ୍ୟ, ଜୁଆଡ଼ି ଓ ଚୋର ମୋର ଭାଗ୍ୟରେ ସ୍ୱାମୀ ହେବା ପାଇଁ ଥିଲା । ଏବେ ମୁଁ କ'ଣ କରିବି? ବିଷ ଖାଇବି ନା କୂଅଁକୁ ଡେଇଁ ପଡ଼ିବି ।" ଏକଥା କହୁ କହୁ ସେ ହଠାତ୍ ଉଠି ପଡ଼ି ତା'ର ଲୁଗା ସବୁ ଏକାଠି କରି ବାନ୍ଧିଲା ।

କମଳ ମୁହଁ ଶେତା ପଡ଼ିଗଲା । ସେ କିଂକର୍ତ୍ତବ୍ୟବିମୂଢ଼ ହୋଇ ବସି ରହିଲା । କାରଣ ଏତେଦୂର ସେ ଆଶା କରି ନଥିଲା । ସେ ବେଶି ଆଶ୍ଚର୍ଯ୍ୟ ହେଲା କି ଅହଲ୍ୟା ଏସବୁ ଜାଣିଲା କିପରି । ତା'ପରେ ସେ ପରିସ୍ଥିତି ଅନୁସାରେ କାର୍ଯ୍ୟ କଲା । ଅହଲ୍ୟା ପାଖରେ ହାତଯୋଡ଼ି କ୍ଷମା ମାଗି କହିଲା, "ମୁଁ ଏବେ ଜାଣି ପାରିଛି ଜୁଆ ଖେଳିବା ଦ୍ୱାରା ମଣିଷ କେତେ ନୀଚ ହୋଇପାରେ । ଚୋରି କରେ, ସ୍ତ୍ରୀଠାରୁ ଲୁଚାଇ ସବୁ ନେଇଯାଏ, ହଜାର ମିଛକଥା କୁହେ, କରଜ କରି କରି ମରେ । ତୁମ ଦେହ ଛୁଇଁ ଶପଥ କରୁଛି ଆଜିଠାରୁ ଆଉ କେବେ ମଧ୍ୟ ମୁଁ ସେ ଅପରାଧ କରିବି ନାହିଁ । ମୋତେ କ୍ଷମା କର ଆଉ ମୋତେ ଛାଡ଼ି ଯାଅନାହିଁ ।"

କମଳର ପଶ୍ଚାତାପ ଦେଖି ଅହଲ୍ୟାର ହୃଦୟ ତରଳିଗଲା । ସେ ଆଉ ଚାଲିଯିବା ପାଇଁ ଚେଷ୍ଟା କଲାନାହିଁ । କମଳ ପତ୍ନୀ ଅହଲ୍ୟା ପାଖରେ କୃତଜ୍ଞତା ପ୍ରକାଶ କରି କହୁଥାଏ, "ମୁଁ ସତରେ ସବୁଠାରୁ ସୌଭାଗ୍ୟବାନ୍, କାହିଁକି ନା ତୁମପରି ସ୍ତ୍ରୀ ପାଇଛି ତମେ ମୋତେ କୁମାର୍ଗରୁ ନେଇ ଆସି ସତ୍‌ମାର୍ଗର ସନ୍ଧାନ ଦେଇଛ ।"

ଅହଲ୍ୟା ହସି ହସି କହେ, "ସେସବୁ ତ ମୋର ଧର୍ମ ।"



# ଫଟୋ-ପରିଚୟ-ପ୍ରତିଯୋଗିତା: ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଜାନୁଆରି ୧୯୮୪ ସଂଖ୍ୟାରେ ପ୍ରକାଶ ପାଇବ


M. Natarajan


P. Sundaram

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଚାରି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ନଭେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ।
★ ପରିଚୟୋକ୍ତି ସହିତ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

---

### ସେପ୍ଟେମ୍ବର ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଗଣେଶ ପାଖରୁ ମୂଷିକ ବାହନ କେବେ ତ ଅଲଗା ନାହିଁ,
ଦ୍ୱିତୀୟ ଚିତ୍ର : ମୟୂର ଏଇଠି କାର୍ତ୍ତିକ ଠାକୁର କୁଆଡ଼େ ରହିଲେ ଯାଇ!
ପୁରସ୍କାର ବିଜୟିନୀ : ଗୀତା ପଟ୍ଟନାୟକ, ବ୍ରହ୍ମପୁର।
ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

### ପ୍ରଶ୍ନମାଳାର ଉତ୍ତର

୧. ମେଘାସ୍ଥିନିସ୍। ଗ୍ରୀକ ରାଜା ସେଲ୍ୟୁକସ୍ ଏହାଙ୍କୁ ରାଜା ଚନ୍ଦ୍ରଗୁପ୍ତଙ୍କ ଦରବାରକୁ ପଠାଇଥିଲେ। ୨. ସାଇରସ (ଖ୍ରୀ: ପୂ: ୫୫୮-୫୩୦) ୩. ଡାରିଅସ (ଖ୍ରୀ: ପୂ: ୫୨୨-୪୮୬) ୪. ପଣ୍ଡିଚେରୀର ଦକ୍ଷିଣରେ ଅବସ୍ଥିତ ସେଣ୍ଟ ଡାଭିଡ ଦୁର୍ଗ ଓ ମାଡ୍ରାସର ସେଣ୍ଟ ଜର୍ଜ ଦୁର୍ଗ। ୫. ନେପୋଲିଅନ୍।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI

# କାଶକୁ ଶୁଏଇଦିଏ ଗ୍ଲାଇକୋଡିନ




- ଆପଣଙ୍କ ମସ୍ତିଷ୍କ'ର କାଶ-କେନ୍ଦ୍ରକୁ ନିୟନ୍ତ୍ରଣ କରେ ।
- ଆପଣଙ୍କ ଗଳା ଘଡଘଡ ହେବାଠାରୁ ଆରାମ ଆଣେ ।
- ଆପଣଙ୍କ ଛାତି'ର ମାନ୍ଦା ସ୍ନାୟୁକୁ ଆରାମ ଆଣେ ।
- ଆପଣଙ୍କ ଫୁସଫୁସରେ ଜମିଥିବା ଶ୍ଳେଷ୍ମା ଦୂର କରେ ।



**ଗ୍ଲାଇକୋଡିନ-**
**୪ ପ୍ରକାରେ କାର୍ଯ୍ୟକାରୀ**
**ନିର୍ଭରଯୋଗ୍ୟ**
**କାଶ-ଉପଶମକାରୀ।**

## ଶଯ୍ୟା ତ୍ୟାଗନ୍ତୁ, ଏଇ ନୂତନ ଆରାମ ନେଇ।

everest/83/ACW/307-or

























SMALL THINGS MATTER A LOT IN CHILDHOOD.




IS ONE OF THEM

SUPERB

# ମାଲ୍ଟୋଭା ଦଳ –
# ସବୁବେଳେ ଦୁମଦୁମ, କଣ ଯେ କରିବେ କିଏ ଜାଣେ!



ଯେଉଁ ପିଲାମାନେ ମାଲଟୋଭା ଖାନ୍ତି, ସ୍କୁଲରେ, ଖେଳରେ ସବୁବେଳେ ସେମାନେ ପ୍ରାଣୋଚ୍ଛଳ ହୋଇ ରହନ୍ତି । କାରଣ ମାଲଟୋଭାରେ ସମସ୍ତ ଉତ୍ତମଗୁଣ ପରିପୂର୍ଣ୍ଣ ହୋଇ ରହିଛି । ମାଲଟୋଭା ପିଲାମାନଙ୍କର ଏ ସବୁ ଉପକାର କରିଥାଏ । ତାଜା ଦୁଧରେ ମିଶେଇଲେ ଏହା ଏକ ଚମତ୍କାର ପାନୀୟ ହୁଏ ।

## ସ୍ୱାଭାବିକ ଭାବେ ପାଚିଥିବା ଗହମ ଓ ବାର୍ଲିର ମଲ୍ଟ

ପଂଜାବରୁ ଆସେ ଗହମ ଓ ବାର୍ଲି ଓ ତାହା ପୁଷ୍ଟିକର ମଲ୍ଟ ଭାବେ ତିଆରି କରାଯାଏ ମାଲଟୋଭା ପ୍ଲାଣ୍ଟରେ । ଅତ୍ୟାବଶ୍ୟକ ଶର୍କରାସାର ଓ ଭିଟାମିନ 'B'ରେ ପରିପୂର୍ଣ୍ଣ ମାଲଟୋଭା ହେଉଛି ପୂର୍ଣ୍ଣରୂପେ ସୁପାଚ୍ୟ-ଖାଦ୍ୟ ଓ ଏହା ସହଜରେ ରକ୍ତରେ ମିଶିଯାଏ ।



## ବିଶୁଦ୍ଧ, ଘନ ଦୁଗ୍ଧ

ମାଲଟୋଭାରେ ଯେଉଁ ଦୁଗ୍ଧାଂଶ ଅଛି ତା ଆସେ ଆମର ନିଜର ଦୁଗ୍ଧ ସଂଗ୍ରହ କେନ୍ଦ୍ରମାନଙ୍କରୁ । ୧୦୦% ବିଶୁଦ୍ଧ, ୧୦୦% ପୁଷ୍ଟିକର ।

## ରୁଚିକର କୋକୋ ସ୍ୱାଦ

ଆମେ ବ୍ୟବହାର କରୁ ବିଦେଶରୁ ଆମଦାନି ଉତ୍କୃଷ୍ଟ କୋକୋ-ଡାଲ କାରଣ ଆମେ ଚାହୁଁ ଆପଣ ଉତ୍ତମ ସ୍ୱାଦ ପାନ୍ତୁ ଓ ଆପଣଙ୍କୁ ପୁଷ୍ଟିକର ଗୁଣ ମିଳୁ । କୋକୋ ହଜମଶକ୍ତି ବଢ଼ାଇଥାଏ ଓ କ୍ଳାନ୍ତି ମେଣ୍ଟାଇବାରେ ସାହାଯ୍ୟ କରେ ।



## ପରିବର୍ଦ୍ଧିତ ଚିନି

ବିଶୁଦ୍ଧ ଆଖୁ ଚିନି ହେଉଛି ଚିନି ଭିତରେ ଶ୍ରେଷ୍ଠ ଚିନି । ପିଲାମାନଙ୍କର ଅନେକ ହେଉଥିବା ଅତିରିକ୍ତ ଶକ୍ତି ପାଇଁ ଏହା ଅତି ପ୍ରୟୋଜନ ।

## ବିଶେଷଭାବେ ଭିଟାମିନରେ ସମୃଦ୍ଧ

ମାଲଟୋଭା ହେଉଛି ପ୍ରୋଟିନ, କାର୍ବୋହାଇଡ୍ରେଟ, ଭିଟାମିନ ଓ ଖଣିଜସାରର ଏକ ଅପୂର୍ବ ସମ୍ମିଶ୍ରଣ । ଅତିରିକ୍ତଭାବେ ଭିଟାମିନ A, ନିଆସିନ, ଭିଟାମିନ $B_1$ ଓ ଭିଟାମିନ $D_2$ ରେ ଏହାକୁ ସମୃଦ୍ଧ କରାଯାଇଛି । ଏଥିରେ କୃତ୍ରିମ ସ୍ୱାଦ ନାହିଁ ।






JIL ଜଗଜିତ ଇଣ୍ଡଷ୍ଟ୍ରିଜ ଲିମିଟେଡ

୧୯୮୧ ଓ ୧୯୮୨ ରେ ମୋଣ୍ଡେ (ବ୍ରସେଲ୍ସ) ସିଲେକସନ ସ୍ୱର୍ଣ୍ଣପଦକ ବିଜେତା

